# ଭକ୍ତରତ୍ନ ଭଜନ

ବା

# ଭଜନ ଅମୂଲ୍ୟରତ୍ନ



ଏଥିରେ ଶିବ, ଆଖଣ୍ଡଳମଣି, କାଳୀ ଠାକୁରାଣୀ, [illegible]
ଭଗବାନ ସତ୍ତା, ଅଲେଖ ଓ ଶଙ୍କର ଭେଦ ଆଦି ନାନାପ୍ରକାର ଭଜନ
ଓ ଜଣାଣମାନ ଓଡ଼ିଆ, ବଙ୍ଗଳା ଏବଂ ହିନ୍ଦୀରେ ଦିଆ ଯାଇଅଛି ।



ଅଭିନବ ସଂସ୍କରଣ ୧୯୬୨

ପ୍ରାପ୍ତିସ୍ଥାନ

— ଦାଶରଥୀ ପୁସ୍ତକାଳୟ —

ବାଲୁବଜାର, କଟକ-୨

ତିନିଟଙ୍କା ।
ପଚସ୍ତରି ପଇସା

# ସୂଚୀପତ୍ର

ବିଷୟ — ପୃଷ୍ଠା

ସୂଚୀପତ୍ର ସମାପ୍ତ ।



# ଭକ୍ତବନ୍ଧୁ ଭଜନ

ବା

# ଭଜନ ଅମୂଲ୍ୟ ରତ୍ନ



( ୧ )

## ଅଖଣ୍ଡଳମଣିଙ୍କ ଭଜନ ଜଣାଣ

ଜୟ ଭୂତଭାବନ, ବିଶ୍ୱପାବନ, ସାଧୁ ସଜ୍ଜନ ରଞ୍ଜନ ।
ଜୟ ଅଗ୍ନି ଉଜ୍ଜଳ, ଜୀବପାଳକ, ଅସ୍ଥି ମାଳକ ଶୋଭନ ॥
ଜୟ ଆପଦ ତାରଣ, ଶ୍ରାନ୍ତବାରଣ, ପାପ ଖଣ୍ଡଣ ନାଶନ ।
ଜୟ ଶୃଙ୍ଗବାଦକ, ସ୍ୱଳ୍ପ ବଳ, ଦୁଷ୍ଟ-ଦଣ୍ଡକ-ଶାସନ ॥
ଜୟ ପ୍ରେତନାୟକ, ତନ୍ତ୍ରଗାୟକ, ଶୂଳ-ଶାୟକ ଧାରଣ ।
ଜୟ ଭକ୍ତବତ୍ସଳ, ସତ୍ୟ ନିର୍ମଳ, ନିତ୍ୟ ମଙ୍ଗଳକାର ॥
ଜୟ ଷଣ୍ଢବାହନ, ଭସ୍ମ ଶାସନ; ବ୍ରହ୍ମଜ୍ଞାନନସ୍ମରଣ ।
ଜୟ ସର୍ପଖେଳନ, ଦର୍ପହାରଣ, ମୀନକେତନ ମାରଣ ॥

---

( ୨ )

ଭଜ ରେ ମନ ! ଭୂତନାଥ ଭବଭୟବାରଣଂ ।
ଆଦିଦେବ ଶୂଳପାଣି ତ୍ରିପୁରାସୁରମାରଣଂ । ପଦ ।

ପରିହୃତ ଦୃତ୍ତ ବ୍ୟାଘ୍ର ଚର୍ମ ଲମ୍ବିତ ଜଟାଜୁଟ ଭାଲ । କାଳରୂପ କାଳ କାଳ ବ୍ୟାଳ ମାଳ ଧାରଣଂ । ୧ । ଜ୍ୱଳିତ ନୟନ ଚନ୍ଦ୍ର ଭାଲ, ତ୍ରୈଲୋକ୍ୟନାଥ ତ୍ରିଲୋଚନ, ଦୀନଗଣେ ଶିବ ଦୟାଳ, ସକଳ କଲ୍ମଷ ହାରଣଂ । ୨ । କଳ୍ପିତ ରଜତ ଗିରିଶ ରୂପ, ଗଙ୍ଗାଧର ଭୂପ ଭୂପ । ସ୍ତ୍ରୀଚିରନ୍ତିକ ଭକ୍ତକୂପ ଚରମଙ୍ଗଳକାରଣଂ । ୩ । ଡିମ୍ବ ଡିମ୍ବ ଘନ ଡମ୍ବରୁ ବୋଲ, ଶୃଙ୍ଗନାଦ ଘୋର ରୋଳ, ଅର୍ଦ୍ଧମିଳିତ ନୟନ ଯୁଗଳ ପାତକୀ ଜନ ତାରଣଂ । ୪ ।



( ୩ )

## ମହାଦେବଙ୍କ ଜଣାଣ

( ମନ ସୁମନ ରେ ! ସୁଖେ ଏହୁ ସୁଖ—ବୃନ୍ଦେ )

ଭୋଳା ମହେଶ ହେ ! କରୁଣା କର ଜଗତେ ।
ଶରଣ ଗତରେ ଅକରୁଣା କଲେ, ନିନ୍ଦା ନ ହେବ କି ତୋତେ ।ପଦ।

ସେ ଗଙ୍ଗା ସୁନ୍ଦରୀ ହିମାଦ୍ରି କୁମାରୀ
ତୋ ମନ ହାରିଣୀ ଯତେ ।
ମସ୍ତକରେ ଫଣୀ ଦେଖି କା ମୂର୍ଦ୍ଧନ୍ୟ
ଅଣ୍ଡା ନ ହେବ ଜଗତେ ।୧।
ମହିମା-ସାଗର ଏ କଷ୍ଟୁଁ ଉଦ୍ଧର
ଭାସୁଛି ଏ ଭବ-ସ୍ରୋତେ ।
ତବ ନାମ ସୁର ପଙ୍ଗୁ ଲଙ୍ଘେ ଗିରି
ମୋ ଦୁଃଖ ଗଲା କି ସ୍ମୃତେ ! ୨ ।
କଣ୍ଠିଆ ବୃତ୍ତି ହୋଇ କୋପ ଅତି
ଛେଦିଲ କୁମର ହସ୍ତେ ।
ପତ୍ନୀ ଜାଆଇଲ ବିଚାର ଭୁଲିଲ
ଏତେ ମହିମା ବିଖ୍ୟାତେ । ୩ ।

ହେ ଶ୍ମଶାନ ବାସି ! ତବ ସଙ୍ଗୀ
ବର୍ତ୍ତିବ କେ ବା ଜଗତେ ?
ତୋ ପଦ ମାଧବ ଶରଣ ଯାଚଇ
ଗୋପୀନାଥ ଅନୁବ୍ରତେ । ୪ ।

(୪)

## ଆଖଣ୍ଡଳମଣିଙ୍କ ଜଣାଣ

( କାନ୍ଦ କାନ୍ଦ ଆଖି ପାଣି—ବୃତ୍ତେ )

ଜୟ ଆଖଣ୍ଡଳମଣି ! ମହିମାର ଖଣି ହେ ।
ସ୍ଥାବର-ଜଙ୍ଗମ-କୀଟ ତବ ପଦେ ଋଣୀ ହେ । ପଦ ।

ପୀୟୂଷ ନାମ ତୁମ୍ଭର, ଆରତ ଆରତ ହର,
ହଳାହଳ ବିଷ ପାର— କରପାର ପୁଣି ହେ । ୧ ।
କାର୍ତ୍ତିକ-ଗଣେଶ ତାତ, ପାଶୁପତ ବନ୍ଦିତ,
ଶିରରେ ଚନ୍ଦ୍ର ଭୂଷିତ, ଗଳେ ହାର ଫଣି ହେ । ୨ ।
ପାପ ବିମୋଚନକାରୀ ରୋଗ-ଶୋକ-ଭ ପହାରୀ,
ଦୁଃଖୀଜନେ ଦୟା କରି, ତାର ଶୂଳପାଣି ହେ । ୩ ।
ଏତିକି ମାଗୁଣି ପଦେ, ମାଗୁଛି ମୁଁ ଅତି ମୋଦେ
ଭବଭୟ ହଟାଇବ, ଗୋପୀର ମାଗୁଣି ହେ । ୪ ।

( ୬ )

( କାନ୍ଦ କାନ୍ଦ ଆଖିପାଣି — ବୃନ୍ଦେ )

ଦୁର୍ଗେ ଦୁର୍ଗତିହାରିଣୀ, ମା ଶିବ ସିମନ୍ତିନୀ,
କେତେ ରୂପ ଧୃଅ ମାତ ! ଜଗତର ଜନନୀ । ପଦ ।
ପଥରେ ହୁଙ୍କାର ମାତଙ୍ଗୀ ! ମା ପତିତ-ପାବନୀ ।
ଭବାନୀ ଭୈରବୀ କାଳୀ ଦାନବଙ୍କ ଦଳନୀ । ୧
ଶକ୍ତିରୂପା ଅନ୍ନପୂର୍ଣ୍ଣା ମା ଦାରିଦ୍ର୍ୟ ଭଞ୍ଜନୀ ।
ଦକ୍ଷପୁରେ ଜନ୍ମ ନାମ ହୋଇଲା ଦାକ୍ଷାୟଣୀ । ୨ ।
ବୃନ୍ଦାବନେ ପୌର୍ଣ୍ଣମାସୀ ଗଣେଶଙ୍କ ଜନନୀ ।
ନାନାରୂପେ ମୁକ୍ତି ଦଅ କାଳଭୟତାରିଣୀ । ୩ ।

( ୭ )

## କାଳୀମାତାଙ୍କ ଭଜନ

( ମିତ ! ଶୁଣ୍ହା ଏ ପଦ—ବୃନ୍ଦେ )

ଜୟ ମାତଃ କାଳିକା !
ଭବ ପାର ହେବ ବୋଲି ପାରୁଛୁ ଡକା । ପଦ ।

ରୁଦ୍ର ଦେବ ! ଅଭନ୍ଧା, ଭୋଳା ମହେଶ ଜାୟା,
ହିମ-ଅଦ୍ରି ତନୟା, ନ ସହ୍ୟ କୃଷ୍ଣମାୟା !
ଦୀନଜନେ ସୁଦୟା, ଜରେ ମହାମାୟା !
ସୁ ଅନୁକମ୍ପ । ୧ ।

ଜଳଦ କାନ୍ତି ତୋର, ଆହା କି ମନୋହର,
ମସ୍ତକେ ମୁକୁଟ, ଖୋଲ ଘନ ଚିକୁର
କରେ ଖଡ୍ଗ-କାଠ, ଗଳେ ଉପଦ ଦାନ୍ତ,
ଦୈତ୍ୟ ଦଳିକା । ୨ ।

ଦୁର୍ଗା ଦାକ୍ଷାୟଣୀ ଉମା, ତାରା ଅମ୍ବିକା ଶ୍ୟାମା,
ଅପର୍ଣ୍ଣା କର କ୍ଷମା, ସୁଗୁଣେ ଗୁଣଧାମା
ଭବଭୟ ଗାଡନ, ଏଡ଼ ସମକର୍ଷଣ,
ନ ରହେ ଦଣ୍ଡ । ୩ ।

( ଲକ୍ଷ )

( ୮ )

## ତ୍ରିନାଥ ଭଜନ

( ଅଜ୍ଞାନ ତିମିରେ ମୋ ଚକ୍ଷୁ ଅନ୍ଧକାର – ବୃତ୍ତେ )

ଜୟ ଜୟ ତ୍ରିନାଥ ହେ ଦୀନଜନ ବନ୍ଧୁ ।
ଜୟ ଅନାଥ ମୋଦର କୃପାଜଳ ସିନ୍ଧୁ ହେ । ୧ ।
ବ୍ରହ୍ମା-ବିଷ୍ଣୁ-ମହେଶ୍ୱର ଏ ତିନି ନାମରେ ।
ପୂଜା ପାଉଅଛ ପ୍ରଭୁ ! ଏ କଳିଯୁଗରେ ହେ । ୨ ।
ଯା ନାମ ଶୁଣି ପଙ୍ଗୁ ଗିରି ଲଙ୍ଘିଥିଲେ ।
ଚକ୍ଷୁ ପାଇ ଅନ୍ଧ ଧାଇଁ ଦେଖିଥିଲେ ମେଳା ହେ । ୩ ।
ସମ୍ମତ ଭରଣେ ପୂଜା ହୁଡ଼ନ୍ତେ ସାଧବ ।
ଯେ କୌଶଳେ ତାର ପ୍ରଭୁ ! ବୁଡ଼ାଇଲ ନାବ ହେ । ୪ ।
ରୂମ୍ନକ୍ତ ନନ୍ଦ ବୈଷ୍ଣବ ସବଂଶେ ବିନାଶ ।
ଦେଖି ଚରିତ୍ରେ ଶଚଣ ଗଲ ହୋଇ ତୋଷ ହେ । ୫ ।
ଯା ନାମକୁ ଭଜି କରେ ଦୁର୍ଦ୍ଦଣ୍ଡ ଶମନ ।
ଯା ନାମ ମୂଳତପ୍ପ ଯୋଗୀ ଯୋଗ-ଧନ ହେ । ୬ ।
ସେହି ନାମ ଭୃତ୍ତେ ଥାଉ ସଦା ଏହି ଭିକ୍ଷା ।
ଦୀନହୀନ ଗୋପୀନାଥ ମାଗେ ଏହି ଶିକ୍ଷା ହେ । ୭ ।

---

( ୯ )

( ଆସ ଆସ ସ୍ୱଜନ ! ବାସନ୍ତୀ ଭବନେ—ବୃତ୍ତେ )

ଜୟ ହେ ତ୍ରିନାଥ, ଅନାଥର ନାଥ, ମୋତେ ଏ ଦୀନ ଆରତ ହେ
ଭବ-ଜଳେ ପଡ଼ି; ଯାଉଅଛୁ ବୁଡ଼ି, ନ ପାଇ ଧରମ-ଘାଟ ହେ ।
ଡାକେ ଶରଣ ଅନାଥ
ହାତ ଧର ନାଥ ମୋ ଅସ୍ୱର ହେ । ୧ ।

ଦ୍ରାଗ୍ ପୂତ ବପୁ, ଦେଖି ଅବିରତେ, ବନ୍ଧୁ ମନେ ମୋଦ ଅତ ହେ
ଅନ୍ଧ ହୋଇ ବଳି ଦ୍ରାସ୍ୟେ କାନ୍ଦ କାନ୍ଦ ନ ହୁଏ ମନେ ତ୍ରୁପତ ହେ ।
କଟି ଯାଉଛୁ ଏ କାଳ;
ଯାହା ଏକା ତୁମ୍ଭେ ଆଦମ୍ବଳ ହେ । ୨ ।

ଦୁଃଖ ନିବାରଣ କର ପରିଧାଣ ଯେତ୍ପ୍ନ ତୁମ୍ଭ ନାମ ସୁବି ହେ
ଯିବ ଏ ଜୀବନ, ହେ କଞ୍ଜନୟନ ! ଏଥନ ପଦେ ଗୁହାରି ହେ ।
ଗୋପୀନାଥ ମୋର ନାମ;
ଯେତ୍ନେ ଜୀବନ୍ତେ ନ ଭେଟେ ଯମ ହେ । ୩ ।

---

( ୧୦ )

( ପ୍ରାଣସଙ୍ଗିନୀ ରେ ! ନେଧାଜନ ଯମ୍ବ - ବୃତ୍ତେ )

ମନ ସ୍ୱମନ ରେ ! ଭଜ ପଦ୍ମଚରଣ ।
ଯେବେ ହେବୁ ତୁ କରଣ । ପଦ ।

ହରିନାଥ ନାମ ଯାଙ୍କର, ସେହୁ ମହିମା-ସାଗର,
ବ୍ରହ୍ମା-ବିଷ୍ଣୁ-ଶିବ ଜାଣ, ଏ ତିନି ଜଣ । ୧ ।
ପୃଥ୍ୱୀ ଅତଯାତ କର ଭକ୍ତେ ପାଳ, ଦୁଷ୍ଟେ ମାର,
ନାମ ପୀୟୂଷ ବଟତ, ତ ଚନ୍ଦ୍ର ପ୍ରଣ । ୨ ।
ଯା ପଦେ ଦେବେ ଶଙ୍କର ଶିରେ ଧରିବା ନଶୀର,
ସେ ପଦକୁ ଅନୁକ୍ଷଣ, କର ଭଜନ । ୩ ।
ନ ଦଣ୍ଡିବ ଜନ୍ମରଣ, ନ ହେବ ଭବ ବନ୍ଧନ,
କହେ ଗୋପୀନାଥ ଦୀନ, ମୋ କର୍ମ ହୀନ । ୪ ।

---

## ( ୧୧ )

## ଜଗବନ୍ଧୁଙ୍କ ଭଜନ

ଜୟ ଜଗବନ୍ଧୁ ଯଦୁକୁଳଚନ୍ଦ୍ର, ଜୟ ଯମଳା ଭଞ୍ଜନ ।
ଜୟ ଜନାର୍ଦ୍ଦନ ଜଗଜୀବନ ଜୟ ଦେବକୀନନ୍ଦନ । ପଦ ।

ସତ୍ୟରେ ମତ୍ସ୍ୟରେ ନରହରି କରେ ବଧିଲ ହିରଣ୍ୟ ।
ପ୍ରହ୍ଲାଦେ ଇନ୍ଦ୍ର, ପଦକୁ ନେଇଦେ ବଳେ କଶ୍ୟପ ପତନ । ୧ ।
ତ୍ରେତାଯୁଗରେ ରାମ ଅବତାରେ ପିତା ସତ୍ୟେ ଗଲ ବନ ।
ଲଙ୍କାରେ ରାବଣ ବଧିଲ ଆପଣ ଭକ୍ତକୁ କଲ ରାଜନ । ୨ ।
ଦ୍ୱାପରେ ଗୋପରେ କୃଷ୍ଣ ଅବତାରେ ମୋହିଲ ଗୋପୀଙ୍କ ମନ ।
କଂସ କେଶୀ ନାଶି ଭୂଭାର ହରିଥିଲି ରାଜା କଲ ଉଗ୍ରସେନ । ୩ ।
କଳିଯୁଗେ ହୁଏ ବସିଛ ନୀଳାଚଳେ ଶ୍ୱେତ ପୀତ ରକ୍ତବର୍ଣ୍ଣ ।
ଶ୍ୱେତ ପଦ୍ମପାଦୁଁ ବହେ ମକରନ୍ଦ ମଧୁକର ଗୋପୀଜନ । ୪ ।

---

## ( ୧୨ )

## ଜଗନ୍ନାଥଙ୍କ ଭଜନ

### ରାଗ ବସନ୍ତ ପଞ୍ଚମ

ଜୟ ଶଙ୍ଖ ଚକ୍ର ଗଦା ପଦ୍ମ କରେ ଧର ହେ ।
ଗରୁଡ଼ ଆସନ ରୁକ୍ମ କନକ ବେଶ ଶ୍ରୀ ହେ । ଘୋଷା ।
ଚନ୍ଦନ ବନମାଳୀ ଦଳ ପଟ୍ଟଜଳ କାନ୍ତି ।
ଶଙ୍ଖ ପଦ୍ମ ଦେଲ ତୋଳି ଗୋପ ଅବତାର ହେ । ୧ ।
ବ୍ରଜବଧୂ ଜନ ମନ ମୋହ ଅନଙ୍ଗ ରୂପେଣ ।
ଷଣ୍ଢ ବକ ଯମଳାର୍ଜୁନ ଶିଶୁପାଳ ମାରି ହେ । ୨ ।
ଗଜ ନକ୍ର କେଳି ବେଳେ ଡାକିଲା ପ୍ରାଣ ବଞ୍ଚେ ।
ତାଙ୍କୁ ଶୁଣି ଯାଇ ଧାଇଁଲେ ରକ୍ଷିଥିଲ ଜଗତ ହେ । ୩ ।

ବନ ଯୋଗ୍ଭାନାକେ ପୁଣି ଆଉକେ ଡାକେ ମୁରଲୀ ।
ତା ତାନ କର୍ଣ୍ଣରେ ଶୁଣି କପଟରୁ ଭାଇ ହେ । ୪ ।
ମୋହର କପଟ ଚୋରେ ଅଟେ କୁତ୍ସିତ ମାଧବେ ।
ଜଣାଣ ଘେନବା ହେଉ ଭୁବଣ ଅଭୟ ହେ । ୫ ।
ତୁମ୍ଭେ ଶରଣପାଳକ ବାନା ନତେ ଅନୁକ୍ଷଣ ।
ପୁଷ୍ପିତ ଭଣନ୍ତି ବୃନ୍ଦ ବେଲ ନବ ହସ ହେ । ୬ ।

---

( ୧୩ )

ଜଗବନ୍ଧୁ ଜଗତର ନାଥ ମିତ୍ରେ ବୋଲାଉଛ । ଦେଲ ଗଜ ନେଲ ତାହା ଆହେ ପ୍ରଭୁ ଚଢ଼ିବାହା, ଏଥକୁ ଧାଁ ତାପରେ ପକାଇ ଯା ଇଚ୍ଛାଉଛ । ପଦ । ପୂର୍ବରେ ବାମନ ହୋଇ, ବଳୀ ଧନ ଦାନ ନେଇ ମିତ୍ର ସୁଦାମାକୁ ଦେଇ ପରଶଂସା ପାଇଅଛ । ଶୁକମନ୍ତ୍ରୀ କେଶେ ବୃନ୍ଦ, ମାରିବାକୁ ଲବ୍ଧ ହୋଇ, ଧୂଳିଖେଳ ପୀତବାସ ଥାଇ ଉଷ୍ଣ ଦେଇଅଛ । ୧ । ଗୋପୀଙ୍କ ବସ୍ତ୍ର ଗୋବୁଲେ, ହେଲେ ଇନ୍ଦ୍ରହେଲେ, ଦ୍ରୌପଦୀ ଡାକିଲ ବେଳେ କୋଟି ବସ୍ତ୍ର ଯୋଗାଇଛ । କଂସ କୁବଳୟା କଷ୍ଟ, ଥିବାରୁ ତକ୍ଷ ପଦାଘାତ, ପୁଣି ଜଳେ ଗ୍ରାହ ମାରି ଗଜେ ତ୍ରାଣ ଦେଇଅଛ । ୨ । ଜଳ ମଧ୍ୟରେ ତଟ, ନାଡିତ ଜୈ ଓଲ୍ଟବଟ, ତା ମୂଳେ ହୋଇ ପ୍ରକଟ ଡାକି ଭାଇ ନ ଶୁଣୁ । ତୁମ୍ଭ ହୃଦସ୍ଥ କଠିନ, କମଠ ଦୃଷ୍ଟିରୁ ଟାଣ, ବଳଭଦ୍ରକୁ କହେଣ ଦେଇ ଭୁଜ ଟେକିଅଛ । ୩ ।

---

( ୧୪ )

ଭଜ ମନ ରାଧାକୃଷ୍ଣଙ୍କୁ । ପର ଟେକୁ ଛେଡେ ଭବସିନ୍ଧୁକୁ ।
ଭବସାଗର, ଅଥଳ ଜଳ, ନାମ ବେଳାରେ ପାରହେବାକୁ । ପଦ ।

ମାୟା ଲଦସ୍ତି, ପଢ଼ିଛୁ ମନ୍ତ୍ର, ଧ୍ୟାନ ଧର ଭବ ସାଧୁ ସଙ୍ଗକୁ ।
ପୂର୍ବର କଷ୍ଟ, ହୋଇବ ନଷ୍ଟ, ଭୟ ନ ଥିବ ଶମନ ଦଣ୍ଡକୁ । ୧ ।
ମାୟାକୁ କାଟ, ଗୋବିନ୍ଦ ରଟ, ରଖିଥିବ ମନ ପୂର୍ବାଟକୁ ।
ଦୁର୍ଜନ ଖଣ୍ଡ, ଭଜିବେ ଅଣ୍ଡ, ଛାଡ଼ି ଭଜ ଶ୍ରୀଗୁରୁଙ୍କ ପାଦକୁ । ୨ ।
ଯୋଗୀଯୋଗାଙ୍ଗ, ଧ୍ୟାନକୁ ଭଙ୍ଗ, ଯୋଗମାୟା ଦ୍ରୁଷ୍ଟି ତାହାଙ୍କୁ ସେବା ।
ଅଙ୍କାରେ ଘଡ, ଅବଜ୍ଞା ହେବ, ତପ ତ୍ୟାଗ ଯୋଗ ଅକାରଣକୁ । ୩ ।
ବଂଶୀବଟକୁ, କଲ୍ପବଟକୁ, ଧ୍ୟାଉଥିବ ମନ ନିତ୍ୟସ୍ଥଳକୁ ।
ନିତ୍ୟ ବହ୍ନାସ୍ତି, ଶ୍ରୀଚନ୍ଦ୍ରଧାସ୍ତି, ଝୁଣି ଧ ଗ୍ରାଣ୍ଡ ଯୁଗଳ ଭାବକୁ । ୪ ।
ବ୍ରଜବିହାରୀ, ଶ୍ରୀ ଦଇତ୍ୟାରି, ମଧୁସୂଦନ କେଶବ ମୁରାରି ।
ଶ୍ରୀ ନିତ୍ୟାନନ୍ଦ, ପାଦକୁ ବନ୍ଦ, ଦୃଢ଼ ଭଜୁଥିବ କୃପାସିନ୍ଧୁକୁ । ୫ ।
କୃପାସାଗର, ଶ୍ରୀ ଦାମୋଦର, ବାରେ ରଖାଲବ ଶ୍ରୀ ଲକ୍ଷ୍ମୀଧର ।
ଭୁବ ଚଣ୍ଡି ଦାନ, ଲୁଟବ ଧଳର ନିତ୍ୟ ପାଦମାଏ ନାମ ବନ୍ଧୁକୁ । ୬ ।

---

( ୧୫ )

ରାଧେ କୃଷ୍ଣ ରାଧେ କୃଷ୍ଣ ରାଧେ କୃଷ୍ଣ ରଟରେ ।
କେତେ ଦିନ ରହିବ ତୋ ମାଟି ପିଣ୍ଡ ଘଟ ରେ । ପଦ ।
ଧନ ଦାରା ପୁତ୍ର ଦେଖି ମନ କରୁ ମୋଟ ରେ ।
ମୋର ମୋର ହୋଇ ତୃଷ୍ଣା ଅଛୁ କର୍ମନାଟ ରେ । ୧ ।
ଯମୁନା ତଟ ନିକଟେ ଅଟେ ବଂଶୀବଟ ରେ ।
ତ୍ରିଭଙ୍ଗି ଭଙ୍ଗିମା ଛନ୍ଦେ ହସି ନନ୍ଦସୁଟ ରେ । ୨ ।
ହରେ କୃଷ୍ଣ ମହାମନ୍ତ୍ର ଅନୁକ୍ଷଣେ ରଟ ରେ ।
ରାମ ନାମ ଖଣ୍ଡାଜରି ପାପ-ତାପ କାଟ ରେ । ୩ ।
ଭାବି ଭାଗବତ ବାଣୀ ଶୁଣ କର୍ଣ୍ଣପୁଟ ରେ ।
ଭବରେ ଭଜିଲେ ଏହା ଅବଧୂତ ଭୂଟ ରେ । ୪ ।

---

( ୧୬ )

ଦୁଃଖ ନାଶନ, ଗରୁଡ଼ାସନ, ହର ଦୁଃଖ ଜଣାଇବ କାହାକୁ ।
ଦୀନନାଥ ଥାଉଁ ଅନ୍ଧାର କୋଠରୁ ଏ ବନ୍ଦୀ ହୋଇବ କାହାକୁ ।
ଚନ୍ଦ୍ରାନାବ ପରେ ବସାଇ କଳ, ପେଲଦେଲ ବୃନ୍ଦା ପାନ୍ଥ ମଣ ।
କାହାକୁ ଡାକବ ରଖ ରଖ ବୋଲି ନନ୍ଦା ଦେବ ଲକ୍ଷ୍ମୀନାହାକୁ । ୧ ।
ସୁଦାମା ଦାରିଦ୍ର୍ୟ ଭଞ୍ଜନକାରୀ, ରଖିଛ ପାଣ୍ଡବେ କୁରୁ ସଂହାରି ।
ଜଳର ଭିତରେ ଗଜକୁ ରଖିଲ ହେଡପନାକଲ ଗ୍ରାହାଙ୍କୁ । ୨ ।
ଅଜାମିଳ ନାମେ ସେ ମହାପାପୀ, ତନୟଙ୍କ ସୁନ ନ ମନ୍ତ୍ର ଜପି ।
ନାଭେକ ମାଇଲ ଶ୍ରୀବତ୍ସ ବ୍ରାହ୍ମଣ ହୃଦେ ବନ୍ଧୁଅଛ ତାହାକୁ । ୩ ।
ଯେଉଁ ନାମ ଧରି ପବନସୁତ, ସମୁଦ୍ର ଡେଇଁ ଆଣିଲ ସଙ୍କେତ ।
ସେ ପାଦେ ଶରଣ କାଶୀ ବିଶ୍ୱେଶ୍ୱର ବ୍ରହ୍ମା ନ ପାଇଲେ ଯାହାକୁ ।୪।

—o—

( ୧୭ )

ମହିମା ଶୁଣିମା ହେଉ ଗରବ ଡାକ ।
କରେଖ ଜନକୁ ରଖ ପଙ୍କଜ ମୁଖ । ପଦ ।

କୃପା ସାଗର ବନ୍ଧୁନ ମେ କର୍ମକୁ ଗଲ ଶୁଖି
ଜାଣିଲ ମୋ କର୍ମ ବାଙ୍କ, ନେହେ ଦଲେଖ । ୧ ।
ଆତଙ୍ଗ ନ ଶନ ବାନା ନ ଶୁଣ ଭୃତ୍ୟ ବେଦନା
ଏବେ ହୋଇଯିବ ମନା, କେ ଦେବ ଡାକ । ୨ ।
ଦାସ ଯେବେ ନାଶ ଯିବ କୀର୍ତ୍ତିରେ ଅକୀର୍ତ୍ତି ହେବ
[illegible] । ୩ ।
କହେ ସ୍ୱପ୍ନାନନ୍ଦ ଗୁରୁ ନାହିଁ ଆନ ଦୃଢ଼ ଭାବ
ଏ ଦୀନ ଅବସ୍ଥା ମୋର, କେବେ ନ ଦେଖ । ୪ ।

( ୧୮ )

ପତିତପାବନ ନାମ ଅଛି କେତେବେଳକୁ ।
ଲଙ୍ଘିଗଲା ଭକତଙ୍କେ ନାବ ବୋଝ କୂଳକୁ । ପଦ ।

କେମିତାର ବୃକ୍ଷ କୋଟି ଭାଙ୍ଗୁଅଛ ମୂଳକୁ ।
ଛଡ଼ାଉଛ ଅପକୀର୍ତ୍ତି ନିଜର ଆତ୍ମକୂଳକୁ । ୧ ।
ତୁମେ ଥାଇ ଡାକ ଦେଲେ କେତେ ଥର ଶର୍ମିଳୁ ।
ଏଭଳିଠାରେ ନ ଶୁଣିଲ ମୋ ମର୍ମ ଅକୂଳକୁ । ୨ ।
ଲକ୍ଷେ ଯେ ଜନରେ ତାର ଡାକ ଦେଲି ତୁମ୍ଭକୁ ।
ଚନ୍ଦ୍ର ଯେପରି ନନ୍ଦ ନାଶି ଉଦ୍ଧରିଲ ତାହାକୁ । ୩ ।
ଲକ୍ଷେକ ଦ୍ରବ୍ୟରୁ ନେଲେ ସନ୍ଧ୍ୟା ଧୂପ ଦୀପକୁ ।
ଲମ୍ବିଛି ଦମ୍ପଣା ମାଳ ପାଦପଦ୍ମ ତଳକୁ । ୪ ।
ଯୋଗିଜନମାନେ ହୃଦେ ଧ୍ୟାଉଛନ୍ତି ଯାହାକୁ ।
ଭଣିଲେ ଗୀରକିଶୋର ପଶୋରିଲ ଆତ୍ମକୁ । ୫ ।

---

( ୧୯ )

ଭୁଜତଳେ ମୋତେ ରଖ ମହାବାହୁ ବାହୁତଳେ ମୋତେ ରଖ ।
ଅପୂର୍ବ ଭୁଜ ବିସ୍ତାରି ଦେଲେ ଘୁଚର କି କରି ପାରିବ ଦୁଃଖ । ପଦ ।

ସଜ କିହ୍ୱାଇଥିବ ନନ୍ଦଘୋଷ ରଥେ ମୁଁ ଥିବି ତୁମ୍ଭ ସେବାରେ ।
ତୁମ୍ଭେ ଦୀନବନ୍ଧୁ ନନ୍ଦସୁତ ହୋଇଲେ କି ଦେଖିବେ ଏ ସଂସାରେ । ୧ ।
ଏ ଗଜ ରାଜ ସମ୍ପତ୍ତି ଛିଡ଼ପଡ଼ ରହିବ ଏ ଲୁଚଇ ନାହିଁ
ଭବନମେ ହୃଦ ଚନ୍ଦ୍ର ନୟନକୁ ଯେତେବେଳେ ଦେଲି ଗୁହି । ୨ ।
ଦିନକୁ ଦିନ ତ ଦୁଃଖ ଅଧିକେକ ସୁଖ ତ ଦିଶଇ ନାହିଁ ;
ଶରୀ ଯାଉଅଛି ଏ ଭବସାଗରେ ରକ୍ଷାକର ଜଗନ୍ନାଥ । ୩ ।
ମୁଁ ଅତି ପତିତ ଭରସା କରିଛି ତୁମ୍ଭ ଶ୍ରୀଚରଣ ତଳେ ;
ଶ୍ରୀ ଗୀରକିଶୋର ମହାରାଜ ଭଣେ ଦୟାକର ମୋତେ ହେଳେ । ୪ ।

---

( ୨୦ )

# ଭାଗବତ ସପ୍ତାହ ଭଜନ

ତାଳ-ଅଠତାଳି ଯତ୍ନ

ମାନ ଉଦ୍ଧାରଣ କର ହେ କାରଣ ଶରଣ ମୁଁ ତୁମ୍ଭ ପାଦତଳେ ।
ଅନାଥରନାଥ ନୀଳଗିରି ନାଥ ଜଗନ୍ନାଥ ନାମ ନୀଳାଚଳେ । ଘୋଷା ।
ମହୋଦଧିକୂଳେ କଳ୍ପବଟମୂଳେ ବସେ କରିଛ ବଡ଼ ଦେଉଳେ ।
ଲକ୍ଷେ ଯେ ଜଳରେ ଗଜ ଡାକଦେଲା ତା ଡାକ ଶୁଣିଲ ପଶାଖେଳେ ॥
ମାରକଣ୍ଡ ଋଷି ଯେ ଡୁବିଲେ ଭାସି ତାକୁ ରକ୍ଷା କଲ ବଟଦଳେ ।
ଅଷ୍ଟମଲ୍ଲ ସଙ୍ଗେ କଂସକୁ ମାରିଲ ନୀତି କଲ ଗୋପବନ ମେଳେ ॥
କିଷ୍କିନ୍ଧାକୁ ଗଲ ବାଳି ବିନାଶିଲ ବନ୍ଧ ବାନ୍ଧିଲ ଯେ ସିନ୍ଧୁଜଳେ ।
ଲଙ୍କାର ରାବଣ ବଧିଲ ଆପଣ ଜନକ ନନ୍ଦିନୀ ସୀତା ଛଳେ । ୩ ।
ପାଣ୍ଡବଙ୍କ ହିତେ ହସ୍ତିନାକୁ ଗଲ ଭୋଜନ କଲ ବିଦୁର ଘରେ ।
କୁରୁ ସଭାତଳେ ଦ୍ରୌପଦୀ ଡାକିଲେ କୋଟିବସ୍ତ୍ର ତାକୁ ଦେଲ ହେଳେ ॥
ବନପୋଡ଼ିକାଳେ ଘୋର ଦାବାନଳେ ରକ୍ଷା କରିଛ ହେ ବ୍ରଜବାଳେ
କହେ ଉପେନ୍ଦ୍ର, କବି ମୂଳଚନ୍ଦ୍ର, ନିତ୍ୟ ଶରଣ ସେ ପାଦତଳେ ॥

———

( ୨୧ )

ତାଳ—ରୂପକ

ଆହେ ନୀଳଗିରି ! ତୁମ୍ଭ ଶ୍ରୀଭୁବନ ଦର୍ପଣ ବେଶ ବେଶ । ପଦ ।
ତୁଳସୀ କନ୍ଦର ପାଶେ ଜଗି, ଧ୍ୟାଉଛନ୍ତି କେତେ କେତେ ଯୋଗୀ ।
ବ୍ୟାକରଣ ପାଠ ସ୍ତୁତି କରୁଛନ୍ତି ନାମ ଜପୁଛନ୍ତି ସଂଖ୍ୟା କରି । ୧ ।
ବଡ଼ଦାଣ୍ଡ ଦେଖି ମନ ତୋଷ, ରେଣୁମାତ୍ର ଚେଣ୍ଟ କଲି ଗ୍ରାସ ।
କ୍ଷୀରି ବଳୀଚତ୍ତରେ ମନ ନ ବୋଧଇ ଝଙ୍କ ଭୋଗଶୀରେ ମନତୋଷ । ୨ ।
ସିଂହଦ୍ୱାରେ ବାଜେ ବେତବାଡ଼ି, ଡାକୁଛନ୍ତି ପାଣ୍ଡବ ଯାଏ ଗ୍ରନ୍ଥ ।
ଶ୍ରୀଜଗନ୍ନାଥଙ୍କ ଦର୍ଶନ ନିମନ୍ତେ ଏତେକୁ ଅନେକ ହୁଡ଼ା ହୁଡ଼ି । ୩ ।

ବାଇଶ ପାବଚ୍ଛ ଗଲି ସୁଖେ, କୈବଲ୍ୟ ପଣସ ବେଢ଼ ପାଖେ ।
ଷଣ୍ଡାଙ୍କୁ ବ୍ରାହ୍ମଣ ଶୂଦ୍ର ପଣଯନ୍ତେ କୈବଲ୍ୟ ଭୁଞ୍ଜନ୍ତି ସୁଖେ ମୁଖେ । ୪ ।
ବେଦ୍ୱଣୀ ପାଦୁକା କୁଣ୍ଡରଜ, ସିଂହ ମାଢ଼ି ବସିଅଛି ଗଜ ।
ସଢେ କି ଏ ଜନ୍ମ ସୁଫଳ ହୋଇବ କାକ ପଡ଼ି ହେଲା ଚତୁର୍ଭୁଜ ।୫
ଗରୁଡ଼ ପଛରେ ରହ୍ମ ଦେଖ, କି ଶୋଭା ପାଉଛି ପଦ୍ମମୁଖ ।
ସ୍ୱର୍ଣ୍ଣ ମାଳା ମୋତି ମାଣିକ୍ୟ ଜଳୁଛି ହୃଦେ ଲମ୍ବିଅଛି ବ୍ୟାଘ୍ରନଖ । ୬ ।
ଶ୍ରୀ ଜଗନ୍ନାଥଙ୍କ ଠାକୁରାଣୀ, ସୁବର୍ଣ୍ଣ ଥାଳରେ ଅର୍ଘ୍ୟ ଆଣି ।
କଲା ଶ୍ରୀମୁଖକୁ ବନ୍ଦନା କରନ୍ତି ସାଧୁ ସନ୍ଥ ଦ୍ୟନ୍ତି ହରିଧ୍ୱନି । ୭ ।
ଭଚ୍ଛେ ସାଳବେଗ ସ୍ନାନଜାତ, ଶ୍ରୀରଙ୍ଗାଚରଣେ ରହୁ ମତି ।
ଶ୍ରୀଜଗନ୍ନାଥଙ୍କୁ ଜଣାଣ କରୁଛି ଦୟାକର ବାରେ ଲକ୍ଷ୍ମୀପତି । ୮ ।

---

( ୨୨ )

ଅହେ ଚକାଡୋଳା ! ଭକ୍ତଙ୍କୁ ବାନ୍ଧିଛ ଶୂନ୍ୟ ଭେଳା । ପଦ ।
ଆସୁଥିଲି କମା ନ ଆସିଲି । ମନ୍ଦା ନାଟ ପରେ ନମସ୍କରିଲି ।
ତଳ ଘୋପା ପ୍ରାସ୍ୱେ କବାଟ ଲଗିଛି ତହିଁ ମତ୍ତହସ୍ତୀ ଗଳଗଲି । ୧ ।
ଏକ ଚକେ ରଥ ଚଳୁଥିଲି । ବେଣ ଚକେ ରଥ ନ ଚଳିଲି ।
ମହାନାଟ ପରେ ଅନଳ ଜଳୁଛି ତଇଳ ପଡ଼ନ୍ତେ ଲିଭିଗଲା । ୨ ।
ମୂଳ ବଟଠାରୁ ତନ କଳା, ଷୋଳ ଗୁମ୍ଫାରେ ବନ୍ଧଣ ଜଳା ।
ମନ୍ଦ ନାଟ ପରେ ଅମୃତ ଯୋଗାଡ଼ ଥାଇ ଆଉ କମା ନ ରହିଲି । ୩ ।
ବନ୍ଧ ନ ଥିଲାକୁ ପାଣି ଥିଲା, ବନ୍ଧ ହେଲା ପାଣି ନ ରହିଲା ।
ମେ ବନ୍ଧ ବାଣନ୍ତେ ତଳକୁ ଟସନ୍ତେ ଉପରକୁ ପାଣି ବଢଗଲା । ୪ ।
ରାସ ପାହ୍ୱଣ ଦବଣ ହେଲା, ଦଜ ପଥ ଅନ୍ଧ ନ ଦିଶିଲା ।
ବନ୍ଧାସ୍ତ କହଇ ସେ ପାଦକୁ ଧାଇ ଅତି ରସେ ରସ ପାନ କଲା । ୫ ।

---

( ୨୩ )

ମନ ! ନ ଭଜିଲୁ ରୁ ବୃଥା କଥାରେ ।
ତୋର ଦୁର୍ଲ୍ଲଭ ଜନ୍ମ ଗଲା ବୃଥାରେ । ପଦ ।

ଏ ଧନ ସମ୍ପଦ ପୁତ୍ର ନାତି ମିଥ୍ୟାରେ, ଦୁଃଖର କାରଣ ସୁଖ ନାହିଁ ସଂସାରେ । ମତ୍ତ ହେଲୁ ମୋହରେ, ଦେଖ ହୃଦେ କାହାର, ସାଧୁ ଝାଳକ ସବ, ଲାଗିଛୁ ଧାଇ ଧବ, ଉଡ଼ନ୍ତା ପକ୍ଷୀପର, ଯିବ ଯିବ କାହାର, କ ସୋବହିଁ ଗଲେ ସଥାରେ । ୧ ।

କହୁଅଛୁ ଶୁଣ ମନ ଏଥି ଉତ୍ତରରେ, ହରେକୃଷ୍ଣ ନାମମନ୍ତ୍ର ସାର ସଂସାରେ । ତୋ ଦେହେ ନାନା କ୍ଲେଶ, ଗର୍ଭ୍ଭର ଦାସ ପାଶ, ଛାଡ଼ ମଣ୍ଡ ପୀୟୂଷ, ପୀୟୂଷ ମଣ୍ଡ ବିଷ, ବର ନୃତ୍ୟ ଅଧୂର, ସବୁହୁ ତୋ ବୟସ, ରସରେ ମତ୍ତ ଭଜନସଙ୍ଗରେ । ୨ ।

ଧର୍ମ କର୍ମ ପରମାର୍ଥେ ସତ୍ୟ କଥାରେ, କାହାକୁ କ ଦେଉଅଛୁ ଜାଣ ରୁ ତାରେ । ଅତି ଯେ ଚକ୍ରବର୍ତ୍ତୀ, ମାନ୍ୟ ଯଶ କୀର୍ତ୍ତି, ସର୍ବଦା ସଜୀବତ, ଧ୍ରୁବଗଣ ବନ୍ଦନ୍ତି, ଭୃତ୍ୟ ନ ସ୍ମରନ୍ତି, ହୋଇଲୁ ରୁ ମୂଢ଼ତ, ମାରୁ ଅସତ ସଙ୍ଗେ ବୃଥାରେ । ୩ ।

ପୋଡ଼ଲେହେଁ ଦେହେ ତେ ଗୃହ ମାଳମଧ୍ୟରେ । ମରଣଲେ ତୋତେ ଦେବେ ଛଣ୍ଡା କନ୍ଥାରେ । ଗୁରୁ କୃଷ୍ଣ ବୈଷ୍ଣବ, ଚରଣେ କର ସ୍ତବ, ତହେଁ ଲଭିବୁ ଲାଭ, ତରିମି୍ବ ଏ ଭବ, କାଳ ଦୈତ୍ୟ ଡରବ, ଦୂରୁ ପଳାଇ ଯିବ । କହିଲେ ନ ମାନୁ ଏ କଥାରେ । ୪ ।

କହେ ନିତ୍ୟାନନ୍ଦ ନନ୍ଦକୁଳ ଚନ୍ଦ୍ରରେ । ନର ମନ ସୁଖ ଧନ ଏହି ଚନ୍ଦ୍ରାରେ । ତେଜ ମାୟା କପଟ, ନାନାଦ ଦନ୍ତ, ଛୁଟି ଗଲେ ଏ ଘଟ, ସରବ ସବୁ ନଷ୍ଟ, ସେ ସେତେ ବଂଶୀବଟ, ତହିଁ କ ସେ ଲମ୍ପଟ, ତା ପାଦେ ଲଗାଅ ରୁ ମଥାରେ । ୫ ।

———

( ୨୪ )

ସୁମନ ଆରେ ! ମୋ ବୋଲ୍ ଧର । ସ୍ୱପନେ ସୁପନ୍ଥେ ଯାଆରେ ।
ଅଗାଧ ଜଳ, ନାହିଁଟି ସ୍ଥଳ, ହରି ନାମ ମୁଖେ ଗାଆରେ । ପଦ ।
ସୁମନ ପଙ୍କକୁ କୁମନ କଣ୍ଟା, ଦନ୍ଦ୍ୟ ଜଗଉଛନ୍ତି ଯଥା ରେ ।
ହେଉ ଜେଉଟ ସଙ୍ଗକୁ ଆଣ୍ଡେ ଆଗପଛ କର ବାହା ରେ । ୧ ।
ତ୍ରିଗୁଣ ମତ, ଘୃର ଅନ୍ଧାର, ଅଠ ଆଖଡ଼ାକୁ ଗୁହାରେ ।
ଷଡ଼ରିପୁ, ଛ ରସ ଭର, ନଜ ବଶୀକରନ୍ତେ ଥାଆ ରେ । ୨ ।
ସାଧୁ ସଙ୍ଗତେ, ବଶୀଜ ଯେତେ, ମୂଳ ରଖି ଲଭ ଖାଆରେ ।
ଯମ ଯେମନ୍ତେ, ଶିବ ପରନ୍ତେ, ଶିବା ଆସିବରେ ଗୁହା ରେ । ୩ ।
ନ କର ହେଲା, ବୁଡ଼ିବ ଭେଲା, ବନ୍ଧୁବତି ବଡ଼ ବାଆ ରେ ।
ଯଶୋବନ୍ତ ଦାସ, ମୋ ପାଦେ ଶରଣ, କେହୁ ନୋହୁବଟି ସାହାରେ ॥

( ୨୫ )

ଭଜ ରାଧ କୃଷ୍ଣ ନିତ୍ୟ ରେ । ସୁମନ ! ଭଜ ରାଧା କୃଷ୍ଣ ନିତ୍ୟ ।
ଯୁଗଳ ଚରଣ ଚିତ୍ତେ କର ଧ୍ୟାନ ନିତ୍ୟସ୍ଥଳେ ବିରାଜିତ । ପଦ ।
ମଣି ମଣ୍ଡପରେ ଶେଷଦେବ ପରେ ବସେ ଯୁଗଳସ୍ୱରୂପ ତ ରେ ।
ଦିବା ରାତ୍ର ନାହିଁ ଚନ୍ଦ୍ର ସୂର୍ଯ୍ୟ ଯହିଁ ଜ୍ୟୋତି ବିରାଜିତ ଶ୍ୱେତ ରେ । ୧ ।
ଜିହ୍ୱର ଦୁଆର ଦ୍ୱାର ଜଗି [illegible] କାହାକୁ ନ ଛାଡ଼େ ପଥ ରେ ।
କୋଟି କୋଟି ବ୍ରହ୍ମ ବିଷ୍ଣୁ ସଦାଶିବ ପଡ଼ିଛନ୍ତି ସେ ଦ୍ୱାରେ ତରେ । ୨ ।
ନାହିଁ କ୍ଷୁଧା ତୃଷା ନାହିଁ କାମ ନିଦ୍ରା ପ୍ରସନ୍ନ ଚିତ୍ତ ସମସ୍ତରେ ।
ପାରୁ ମକରନ୍ଦ ବହେ ମନ୍ଦ ମନ୍ଦ ଗାନ କରି ସର୍ବେ ସୁଖେରେ । ୩ ।
ନିତ୍ୟ ଯେ ରାହାସ ହେଉଛି ପ୍ରମାଣ ଷୋଳସହସ୍ର ଗୋପୀ ସ୍ଥିତରେ ।
ଧରି ବୀଣାଯନ୍ତ୍ର ବଜାନ୍ତି ସମସ୍ତ ପ୍ରଭୁଙ୍କ ପ୍ରସନ୍ନେ ଚିତ୍ତ ରେ । ୪ ।
ଆର ଦ୍ୱାର ପୁଣ ଦେବ ଯେ ଜାଣନ୍ତି ନାମେ ମହା ବୃକ୍ଷ ସ୍ଥିତ ରେ ।
ଜଗତେ ଯେ ଯାଏ ତହିଁ ନାଶ ହୁଏ ନିକଟକୁ ଯାନ୍ତି ସନ୍ଥ ରେ । ୫ ।

ଆରେ ଦ୍ୱାରେ ପୁଣ ସର୍ପେଙ୍କ ସୁଜାଣ ଫୁ ଫୁ କାରଣେ ଗର୍ଜିତ ରେ ।
ସେ ଧ୍ୱନି ଶୁଣିଲେ ଦେବତା ହୋଇଲେ ନାଶ ହୁଅନ୍ତି ଭୂତ ପ୍ରେତ ।୭।
ସେ ପରମତତ୍ତ୍ୱ ନିତ୍ୟେ କର ଧ୍ୟାନ ନିରଞ୍ଜନ ଦେବ ସେ ତ ରେ ।
ପରତେ ହୋଇଲେ ନାଲ ଭୁଟେ ଯିବେ ନାହିଁ ଜନ୍ମ ଜରା ମୃତ୍ୟୁ ରେ ।୭।
ସେ ପଦକୁ ନିତ୍ୟ ଗୁରୁଆ ଅଚ୍ୟୁତ କଣୀ ପଦସରେ ଭୃତ୍ୟ ରେ ।
ଶମନର କାଳପାଶକୁ ଜିଣିବୁ କହେ ଜନ୍ତୁ ଅଜ୍ଞାନ ତ ରେ ।୮।



( ୧୭ )

୮ ବାଜୁଛୁ ଶୂନ୍ୟ ଘରେ ବାଜଣା ।
ନେତ୍ରେ ଦେଖାନାହିଁ କର୍ଣ୍ଣରେ ଶୁଣା । ପଦ ।

ଶ୍ରୀ ଗୁରୁ ବଚନ ଅମୂଲ୍ୟ ଜାଣ ଯହିଁ ପ୍ରେମବାଜ ହୋଇଛୁ ଭୁଣା ।
ଜ୍ୟୋତିରୂପେ ସେତୁ ଦଣେ ଦାଉ ଦାଉ ଗୁଣ୍ଠ ଦନ୍ତ କର ନୁହ ଭେଟଣା
ବଙ୍କନାଳ ପରେ ତ୍ରିଭିଣି ମଣ୍ଡଳ ତହିଁ ପରେ ଅଛୁ ଦିବ୍ୟ ପାଟଣା ।
ସହସ୍ରଦଳରେ ଅନାଦି ପୁରୁଷ ଷୋଳକଳା ରୂପେ ତହିଁ ଘଟଣା ।୨।
ନାହିଁ କରତାଳ ଆବର କଂସାଳ ନ ଥାଇ ମର୍ଦ୍ଦଳ ନ ଥିଇ ବୀଣା ।
ଅନନ୍ତ ଶଯ୍ୟାରେ କୃଷ୍ଣଙ୍କ ଆସନ ଉଭୟପାଶେ ହୋଇ ବ୍ରହ୍ମା ଟଣା ।୩।
ବାହୁଡ଼ା କହଇ ପାଦପଦ୍ମ ଧ୍ୟାୟି ଗୁରୁ ସେବା କର ନ ହୁଅ ବଣା
ହେବ ଯେବେ ବଣା ଜାଣ କର୍ମ ଊଣା ଫୁଟା ବନ୍ଧ ପରେ ଲଗାଅ ଠଣା ॥

---

( ୧୨ )

୮ ବଡ଼ ମାୟାବୀ ଜୀବ ନୁହେଁ କାହାର ।
ଭଜେ ନ ଭଜ ରାମ କୃଷ୍ଣ ଶ୍ରୀହରି । ପଦ ।
ଯେତେବେଳେ ମାତା ଗର୍ଭେ ହେଲୁ ସଞ୍ଚାର
ଅଣାକାର ଭୂମି ସେ ଯେ ନାହିଁ ଆକାର ।

ପ୍ରଥମ ମାସେ ଗୁ ଯେ, ହେଲୁ ଧବଳ ବର୍ଣ୍ଣ ।
ଦ୍ୱିତୀୟ ମାସେ ଗୁ ଯେ, ଜଳେ ଯେସନେ ମୀନ ।
ତୃତୀୟ ମାସେ ଗୁ ଯେ, ଶୂନ୍ୟେ ମେଲିଲୁ ଡ଼ାଳ ।
ଚତୁର୍ଥେ ଅସ୍ଥି ଖଞ୍ଜା ଚୋହର । ୧ ।

ପଞ୍ଚମେ ନାଭିକମଳ କଲୁ ଉଆଣ ।
ଷଷ୍ଠରେ ଚାଉଶ ନାଡ଼ୀ ଖଞ୍ଜିଲୁ ଜାଣ ।
ସପ୍ତମେ ନାସା ଜିହ୍ୱା, ମୁଖ ଯେ କର୍ଣ୍ଣ ଜାଣ ।
ଚକ୍ଷୁ ଭୂଲତା କାମ, ଉମାଣରେ ନିର୍ମାଣ ।
ଗଙ୍ଗା ଯମୁନା ନଦୀ, ବହଇ ଅନୁକ୍ଷଣ ।
ଆପେ ମନକୁ କଲୁ ବଗୁଳ । ୨ ।

ଅଷ୍ଟମେ ଅଙ୍ଗୁଷ୍ଠି ହସ୍ତ ପଦ ଖଞ୍ଜିଲୁ ।
ନବ ମାସେ ଚମଡ଼ାରେ ଢାଙ୍କୁଣି ଦେଲୁ ।
ଦଶ ମାସରେ ଶେଷ, କଲୁ ହୋଇ ପରସ୍ତ,
ସ୍ତୁତି ବେଦ କଲୁ ବ୍ରହ୍ମ, ଶ୍ରୀଦେବ ନନ୍ଦଶିଷ୍ୟ !
ଯଦ ମର୍ତ୍ତ୍ୟମଣ୍ଡଳେ, ମୂର୍ତ୍ତି ଦଶବ ବାସ,
ତୋ ନାମ ଗାଉଥିବ ହମତ । ୩ ।

ସେଉଁ ଯୋନୀ ଲୋଡେଣ୍ଟି କଲୁ ନିର୍ମାଣ ।
ସେହି ଯୋ ଦେହେ ଉଦ୍ଧାର ଏହା ଗୁ ଜାଣ ।
ରଖିଲ ପଶବ ଟ, କଗାଇଲୁ କବାଟ,
ଶିଶୁମୁନି ଭୂଅରେ, ରହିଲେ ନନ୍ଦଗୃହ,
ସେବେ ପାଞ୍ଚବୁ ଭେଟ ପାତ୍ରୁକୁ ଦ୍ୱନ୍ଦ ଦାଟ,
ଗୁରୁ ସେବିକ ଦେଖ ଶ୍ରୀଧର । ୪ ।

ଜନମ ହୋଇ ପଡ଼ିଲୁ ମର୍ତ୍ତ୍ୟମଣ୍ଡଳ,
କୃଷ୍ଣ ବୋଲିବାକୁ ଗଲୁ ପାଶୋର ।

ଅନ୍ତୁଡ଼ଶାଳେ ରହି, ହରି ଭଜିଲୁ ନାହିଁ,
ପାଞ୍ଚବରର୍ଷ ଗଲା, ବାଳସ୍ୱଭରେ ବହି,

ଦଶ ବରଷେ ଧୂଳି, ଘର ଖେଳିଲୁ ବୁହି,
ବାର ବରଷେ ବସ୍ତ୍ର, ପିନ୍ଧୁ ହରଷ ହୋଇ,
ତେବେ ନ ବୋଲୁ ମୁଖେ ଶ୍ରୀହରି । ୧ ।

ପନ୍ଦର ବରଷେ ହେଲୁ ଅମରମତ୍ତା ।
ଷୋଡ଼ଏ ବରଷେ କଲୁ କାମିନୀ ଚିନ୍ତା ।

କାମିନୀ ସଙ୍ଗେ ରହି, ଧନ ହରିଲୁ ରୁହି
ସେରୂପେ ଗଲା ତୋର, ଯୁବା ବୟସ ବହି,

ହରି କଥାକୁ ଧନେ, ମନେ ନ କଲୁ ରହି,
ହେବୁ କେମନ୍ତେ ଏ ଭବୁଁ ପାରି । ୨ ।

ବୃଦ୍ଧ ବୟସ ଯେ ଏବେ ହେଲା ତୋହରି ।
ଅବଶ୍ୟ ଦେଖିବୁ ଅରେ ଶମନପୁରୀ ।

କହଇ ଯଶୋବନ୍ତ, ଗୁରୁଙ୍କ ସେବା କରି;
ସେ ନାମ ଧରି ହୃଦେ, ହୋଇବୁ ଭବୁଁ ପାରି,
ବସିବୁ ବଇକୁଣ୍ଠ ଆବୋରି । ୨ ।

---

( ୧୮ )

ଭଜ ମନ ! କଳାକହ୍ନାଇ, ଭଜିଲେ ଏ ଦୁଃଖ ରହିବ ନାହିଁ ।
ନିଶବଦ ଘରୁ ଶବଦ ଶୁଭୁଛି ଅଣାକାର ଅଛି ଆକାର ହୋଇ ॥
ଯାଉଛି ଆସୁଛି ବାରଣ ନୋହୁଛି ତାକୁ ଧନେ ମନ ଚହ୍ନିଲୁ ନାହିଁ ।
ହାଟୁଆ ଥିଲକୁ ହାଟ ଲାଗିଥିଲା ଘାଟ ସାଧିଥିଲା ଘାଟୁଆ ରହି ।
ହାଟହିଁ ଭାଙ୍ଗିଲା ବଜାର ପଡ଼ିଲା ମନୁଆ କରିଣ ରହିବ କାହିଁ ।
ସେଠାବର ଜଳ ଅଛହିଁ ନିର୍ମଳ କୋଟି ଚନ୍ଦ୍ର ଦୁଲା ତହିଁ ଜଳଇ ।

କିଶୋର କିଶୋରୀ କ୍ରୀଡ଼ା କରୁଛନ୍ତି ଯହିଁ ପୃଥ୍ୱୀ ଦିବା ରଜନୀ ନାହିଁ ।
ଧନ ଦାରା ସୁତ ଆବୋର ଚଦିନ୍ତୁ ବୋଲୁଛୁ ଏ ଘରେ ଦାରେଣୀ ମୁହିଁ ।
କେତେ ବଡ଼ ସୁଖ କ୍ଷଣକେ ଭାଙ୍ଗିବ ଦେନଯିବେ ମଡ଼ା ମଶାଣୀକୁହିଁ ।
ବୃଥା ରୁ ହୋଇଲୁ ଏବେ ବି କରରୁ ଦୟାଧର୍ମ ତୋର ହୃଦରେ ନାହିଁ ॥
ବୋଲେ ଦୀନକୃଷ୍ଣ ସେ ପାଦେ ଶରଣ ଖୋଜିଲେ ଏ ଦେହ ପାଉରୁ
ନାହିଁ । ୫ ।

( ୧୯ )

ଭଜ ମନ ଭଗବନ୍ତଙ୍କୁ; ବ୍ୟାସ ଯତ୍ନ ଲିହୁଛନ୍ତି ଯାହାକୁ ।
ଅନେକ ପାଷଣ୍ଡ ଗ୍ରାସ କରିଛନ୍ତି ଅନେକ ପ୍ରାପତ ହେଲେ ଶୁନ୍ଦଙ୍କୁ ।
ଶୁକଙ୍କ ହୃଦେ ହୋଇଛୁ ବ୍ୟକ୍ତ ସେ ତତ୍ତ୍ୱ ଗୋଚର ସନ୍ଥଜନଙ୍କୁ ॥
ସନ୍ଥଜନ ହେଲ ହୋଇଣ ନିଷ୍କଳ ପାନ କରୁଛନ୍ତି ମକରନ୍ଦକୁ । ୧ ।
ଯେଉଁ ସୁଧାରସ ଭକ୍ତଜନ ଗ୍ରାସ ନଯାନେ ଦେଖନ୍ତି କ୍ଷଣେକ୍ଷଣେ ।
ସପ୍ତାଙ୍ଗରେ ଯୋଗୀ ସାତବାର ସାଧି ଚ୍ଛଅନ୍ତି ଅଷ୍ଟାଙ୍ଗଯୋଗକୁ ।
ବଶିଷ୍ଠ ନାରଦ ଧ୍ରୁବ ପ୍ରହ୍ଲାଦ ଧ୍ୟାଉଛନ୍ତି ହୃଦେ ଯେଉଁ ପଦକୁ ।
ସର୍ବ ଭକ୍ତ ଜାତ ହୋଇଣ ବଖ୍ୟାନ ଲଭିଛନ୍ତି ସେ ମୁକତିପଥକୁ ।୨।
ଅଙ୍ଗିର ଅଗସ୍ତି ଭୃଗୁ ପରାଶର କାର୍ପଣ୍ୟେ କହନ୍ତି ଅଷ୍ଟବନ୍ଧଙ୍କୁ ।
ସେ ମହା ନିଗମ କର୍ଣ୍ଣରେ ଶୁଣିଲେ ନିସ୍ତାର ହୋଇବ ଭବଜଳକୁ ।
ଭକ୍ତିଯୋଗକରି ବ୍ରଜାଙ୍ଗନା ଗୋପୀ ପାଇଲେଟି ଯେଉଁ ପାଦପଦ୍ମକୁ ।
ଶିବକୁ ଜାଣନ୍ତି ଭସ୍ମେ ପାଶୋରନ୍ତି ସେବାରେ ଅଛନ୍ତି କାଳକାଳକୁ ॥
ସୁରୁଂ ଅଗ୍ରେ କର ଗୋବିନ୍ଦ ସୁମର ଧ୍ୟାନ କରି ଚିହ୍ନ ଜ୍ଞାନବାଟକୁ ।
କହେ ଚଣ୍ଡୀଦାସ କରିଅଛୁ ଆଶ ସାଧୁ ସନ୍ଥଙ୍କର ପାଦରଜକୁ ।୩।

( ୩୦ )

✓ ଭାଗବତ ଗୋସାଇଁ ! ତନେ ମୋ ଗୁହାରି ଶୁଣିଲ ନାହିଁ ।
ଭବାର୍ଣ୍ଣବେ ପଡ଼ି ହାଉଅଛୁ ବୁଡ଼ି ରକ୍ଷା କାହିଁ ପାଇଁ କଲ ନାହିଁ । ପଦ।
ଗଙ୍ଗା ଗୟା ଆଦି ତୀର୍ଥ ଭୂତମାନ ଯିବାକୁ ମୋହର କର୍ତ୍ତବ୍ୟ ନାହିଁ।
ଗରିଷ୍ଠ ଶରୀର ପାପିଷ୍ଠ ପମତ ନିତ୍ୟେ ଗୁରୁ ପାଦତଳେ ଭଜଇ । ୧ ।
ବସୁସ ସକଳ ପାଦ ନ ଚଳଇ ନୀଳାଚଳ ତନେ ଦେଖିଲି ନାହିଁ ।
ନୟନ କୋଣରେ ଅଶ୍ରୁ ମାନ ଠାରେ ଶ୍ରୀଗୁରୁଙ୍କ ପଦ ଧ୍ୟାନ କରଇ ।
ତରଙ୍ଗ ଶ୍ୱାନ ମୁଁ ଅଟେ ଅଜ୍ଞାନ ଥକା ଘରେ ତନେ ପଶିଲି ନାହିଁ
ଅସ୍ୱ ନୂଦ୍ର ଭକ୍ତି କରିବ କେମନ୍ତ କମଳାପତିଙ୍କି ହୃଦେ ଭାବଇ ॥
ଶ୍ରୀଭାଗବତଙ୍କ ଚରଣେ ଶରଣ ଯାଚି ତବପଦେ ଭକ୍ତିଣ ଥାଇ ।
ଚଣ୍ଡୀଦାସ କହେ ଶ୍ରୀଗୁରୁଙ୍କୁ ଧ୍ୟାଇ ହରିପାଦ ତଳେ ଲସି ଲାଗଇ ॥

---

( ୩୧ )

ତାଳ—ଆଠତାଳୀ ।

✓ ଭଜ ମନ ! ଜଗନ୍ନାଥଙ୍କୁ; ନୀଳାଚଳବାସୀ ଦାରୁବ୍ରହ୍ମଙ୍କୁ ।
ରତ୍ନସିଂହାସନେ ବସେ କରିଛନ୍ତି ତାଙ୍କୁ ଧ୍ୟାନ କର ତରିବାକୁ ।
ଭଜି ଭୁଷଣ୍ଡ ହୋଇଲେ ଅମର, ଧ୍ୟାଉଅଛନ୍ତି ବରୁଣ କୁବେର ।
ଶଚୀପତି ଯାର ପଦ ନିତ୍ୟେ ଚନ୍ଦ୍ରେ ବାୟୁକ ଧ୍ୟାଉଛ ଯାର ପାଦକୁ ॥
ବେଦବ୍ୟାସ ଆଦି ଶୁକ ସନକାଦି ହୃଦେ ଧ୍ୟାଉଛନ୍ତି ଯେଉଁ ପଦକୁ ।
ବ୍ରହ୍ମା ବେଦଧର ଚନ୍ଦ୍ରେ ଯା ପସ୍ୱର ପଞ୍ଚାନନ ପୂଜୁଛନ୍ତି ଯାହାକୁ ।
ଚନ୍ଦ୍ର ଦିବାକର ଅଷ୍ଟଦିଗପାଳ ଧ୍ୟାଉଛନ୍ତି ହୃଦେ ଯାର ପାଦକୁ ।
ସ୍ୱର୍ଗ ମର୍ତ୍ତ୍ୟ ଆଦି ପାତାଳ ବୈକୁଣ୍ଠ ରହିଅଛି ଯାର ଆଜ୍ଞା ପଦକୁ ॥
ଗଙ୍ଗା ଯା ପସ୍ୱର ସେବେ ନିରନ୍ତର ଚଞ୍ଚଳା ଧ୍ୟାଉଛ ଯାର ରୂପକୁ ।
ଯା ରୂପ ଦର୍ଶନ ପାତକ ଖଣ୍ଡନ ବାଞ୍ଛାଦେବୀ ଭଣେ ଯେଉଁ ନାମକୁ ॥

ଯାର ନାମ ସୁଧା ପିଇଣ ବସୁଧା ରହିଅଛୁ ଯେହ୍ନ ସତ୍ୟପଦକୁ ।
ସେ ସତ୍ୟକୁ ପୁଣ ଚନ୍ଦ୍ରମା ଅରୁଣ ଚଳାଚଳ ହୋନ୍ତି ସ୍ପନ୍ଦନକୁ ।
ଯେଉଁ ପାଦପଦ୍ମ ଭାବ ସାଧୁବୃନ୍ଦ ଭ୍ରମୁଛନ୍ତି ଦେଶ ଧାମ ଦ୍ୱାରକୁ ।
ସେ ପାଦକୁ ଆଶ ଭାବ ଚଣ୍ଡୀଦାସ, ନତ୍ୟେ ପ୍ରଣମି ସେ ବ୍ରଜପୁରକୁ ।

---

( ୩୨ )

ଜଗନ୍ନାଥ ଗୋସାଇଁ । ଦିନେ ମୋ ଗୁହାରି ଶୁଣିଲ ନାହିଁ ।
ଜଗତ ଈଶ୍ୱର ସଂସାରପାଳକ, ଭକତ ଭାବକୁ କମଳାସାଇଁ । ପଦ ।
ଗଜ ଚିଲ୍ଲାଇଲ ମୃଗୁଣୀ ଡାକିଲ ତରିଲ୍ଲ ଅହଲ୍ୟା ପାଦକୁ ଧ୍ୟାଇ ।
ରଖି ବ୍ରଜବାଳ ନାଶିଲ ଅସୁର ଗୋବିନ୍ଦ ନାମ ତୁମ୍ଭର ଅଟଇ । ୧ ।
ବିକଟାଳ ରୂପ ନୃସିଂହ ହୋଇ, ହିରଣ୍ୟ ବଧିଲ ସ୍ତମ୍ଭ ଓହ୍ଲାଇ ।
ପ୍ରହ୍ଲାଦକୁ ରଖି ସ୍ୱର୍ଗପୁରେ ସ୍ଥାପି ବାଲୀକି ଚାପିଲ ପାତାଳେ ନେଇ ।
ସୁଗ୍ରୀବ ସଙ୍ଗତେ ମଇତ୍ର ହୋଇ. ବାଲୀକି ବଧିଲ ସାକ୍ଷାତେ ଯାଇଁ ।
ଦଶଶିର ଦଶକନ୍ଧକୁ ଛେଦଣ ଶରଣ ରଖିଛ ରାବଣ ଭାଇ । ୩ ।
କୁରୁ ପାଣ୍ଡବଙ୍କ ସମର ଭୂଇଁ, ଭାରତ ଯୁଦ୍ଧ ସେଠାରେ ଅଟଇ ।
ଭରଦ୍ୱାଆ ନାମେ ପକ୍ଷୀ ଏକ ଥିଲା, ତାହାକୁ ରଖିଛ ଘଣ୍ଟ ଘୋଡ଼ାଇ ॥
ଆହେ ପୀତବାସ ନ କର ନିରାଶ, ଚରଣେ ଶରଣ ପଶୁଛୁ ମୁହିଁ ।
ତୁମ୍ଭେ ନ ରଖିଲେ ଆହେ ମହାବାହୁ କଷ୍ଟସ୍ଥ ଅନାଥ ହୋଇଲୁ ସୁହିଁ ॥
ସବୁଙ୍କର ଧନ ସଭିଙ୍କ ଜୀବନ, ତୁମ୍ଭ ବିନା ମୋର ଶରଣ ନାହିଁ ।
ସର୍ବଜୀବପତି, ପରଂବ୍ରହ୍ମ ଜ୍ୟୋତି ଶ୍ରୀନୀଳାଚଳରେ ବସିଛ ରହି ॥
ଆରତଭଞ୍ଜନ ପତିତପାବନ ଅନାଦିକ ବଜ୍ରସେଣ୍ଠା ଅଟଇ
ବୋଲେ ଚଣ୍ଡୀଦାସ ନୀଳାଚଳେ ଆଶ କଳା ଧଳା ରୂପ ହୃଦରେ ଧ୍ୟାଇ ॥

---

( ୩୬ )

ଦେଖିବ କଳା ଧବଳ ରୂପ ।
ଦେଖିଲେ ଖଣ୍ଡଇ ଏ ଭବତାପ । ଘୋଷା ।

ଚଞ୍ଚଳା ଯାହାଙ୍କ ପାଦେ ପରଶ୍ୱରି ତାହାଙ୍କ ଦର୍ଶନେ ନ ରହେ ପାପ ।
ନରଦେହ ବନ୍ଧ କହିତ ନୁହଇ ଦ୍ୱିଜ ଯହାରୂଢ଼ ଅପଲୁ ଆପ । ୧ ।
ଆପେ ବ୍ରହ୍ମା ହୋଇ ସୃଷ୍ଟିକି ସୃଜଇ ଯୋଗୀଙ୍କ ହୃଦରେ କରୁଛ ଜପ ।
ପଞ୍ଚାନନ ହୋଇ ପଞ୍ଚମୁଖେ ଧ୍ୟାଇ ନୀଳାଚଳେ ଦେଖ ଚତୁର୍ଦ୍ଧାରୂପ ॥
ଏହି ବିଶ୍ୱରୂପ ଆକାଶ ମଣ୍ଡଳେ ନାରାୟଣ ରୂପେ କରନ୍ତି ତାପ ।
ଚତୁର୍ଦ୍ଦଶପୁର ନବଖଣ୍ଡ ମଧ୍ୟ ନିରଞ୍ଜନ ରୂପେ ମହାପ୍ରତାପ । ୩ ।
ସତ୍ୟଯୁଗରେ ସତ୍ୟଗୁଣେ ଅବତାର ହୋଇଥିଲେ ଶୁକ୍ଳାମ୍ବର ସ୍ୱରୂପ ।
ତ୍ରେତୟାଯୁଗରେ ରଜଗୁଣ ବନ୍ଧ ହରି ଥିଲେ ଯାଇ ରାବଣ ଦର୍ପ ।୪।
ତମଗୁଣ ବନ୍ଧ ଦ୍ୱାପର ଯୁଗରେ ଜନ୍ମ ହୋଇଥିଲେ ଶ୍ରୀକୃଷ୍ଣରୂପ ।
ଶ୍ରୀବୃନ୍ଦାବନରେ ରାହାସ କରଣ କଂସ ନାଶକଲେ ଗୁଡ଼ିଲ ତାପ ।୫।
ଏ କଳିଯୁଗରେ ବୌଦ୍ଧ ଅବତାରେ ହୋଇଛନ୍ତି ପ୍ରଭୁ ମଧୁନୃପ ।
ବୋଲେ ଚଣ୍ଡୀଦାସ ନେତ୍ର ଦେଖି ନାହିଁ ଜନ୍ମଜନ୍ମାନ୍ତରେ କରିଛୁ ପାପ ॥

———

( ୩୭ )

ଭଜ ନୀଳାଚଳବିହାରୀ, ଭବସିନ୍ଧୁ ଯେବେ ହୋଇବୁ ପାରି । ପଦ ।
ଧବଳ ବରନ ଶ୍ରୀନୀଳଦେବଙ୍କ ପାଶେ ଛନ୍ତି ଦେଖ ବଳସ୍ତ କରି ।
ମଧ୍ୟରେ ସୁଭଦ୍ରାରୂପ ମନୋହର ଦର୍ଶନେ ଦୁରିତ ପାପ ନିବାରି ।୧।
କି ସୁନ୍ଦର ଚକା କଳାଡ଼ୋଳା ମୁଖପଦ୍ମ ନୟନକୁ ଦିଶେ ମାଧୁରୀ ।
ଉତ୍କଳ ଚକ୍ର ରତ୍ନ ଉଲ୍ଲାସ ବରଷେ ଆସେ କି କରୁଣା ବାରି ।୨।
ଜାଇ ଜଇ ମଲ୍ଲୀ ମାଳତୀ ସେବତୀ ଖଣ୍ଡମାଳ ହୃଦେ ଅଛନ୍ତି ଭରି ।
ଚକା ନୟନକୁ କି ଶୋଭା ପାଉଛି କାଳନ୍ଦୀ ଜଳେ କି ଆସେ ଲହରୀ ॥

ବ୍ରହ୍ମାଦି ନାରଦ ହେଲେ ଅନ୍ତାମର ଯେଉଁ ପାଦପଦ୍ମ ଅଶ୍ରୟ କରି ।
ଧ୍ରୁବ ପ୍ରହ୍ଲାଦ ଅକ୍ରୂର ଉଦ୍ଧବ ତରିଗଲେ ଯେଉଁ ନାମକୁ ଧରି ।
ବୋଲେ ଜୟୂଦି ୪ ନୃପତି କିଶୋର ଶ୍ରୀମଦ୍ଗୋବିନ୍ଦଙ୍କୁ ବନ୍ଦସ୍ତୁ କର ।
ଯେବେ ନ ଭଜିବୁ ତାହାଙ୍କ ନାମକୁ ଅକାରଣେ ଜୀବ ଯିବ ବାୟୁ

———

( ୩୫ )

ମତ୍ତ [illegible] ଦୁରନ୍ତର । ମେନାମକ ତ୍ରଣ୍ଡେ ରେ ।
ଖଣ୍ଡନ କଲ୍ପ ପାପ । ନ ହିବୁ ଗନ୍ଧବଶୀକେ । ପଦ ।
[illegible] ଧରଣି । ପରବ୍ରହ୍ମ ନାରାୟଣ ।
ପ [illegible] ହେଲେ [illegible] । ଶମନ କା କଣ୍ଠପାଶେ । ୧ ।
ଏ [illegible] ପ୍ରୀତି । [illegible] ।
ନ [illegible] ନୟନେ । କେବା [illegible] କରେ । ୨ ।
ଦାରା [illegible] ସ୍ନେହରେ । ପଡ଼ିଲୁ ଲୁବଧକ କରେ ।
ଏ ପାଶରୁ କାଟିବାକୁ । ଭଜ ଶରଣ ପଞ୍ଜରେ । ୩ ।
ସାଧୁ ସଙ୍ଗତେ ବସ । ମୁକୁନ୍ଦ ନାମକୁ ଘୋଷ ।
ସେ ନାମକୁ ଚଣ୍ଡୀଦାସ । ଧ୍ୟାଉଅଛୁ କରନ୍ତରେ । ୪ ।

———

( ୩୬ )

କାଳୀୟ ଦର୍ପଭଞ୍ଜନା ! ନ ସହୁ ଭକ୍ତ ବେଦନା ।
ଭୃତ୍ୟ ଅପରାଧୀ ହେଲେ ହୁଅ କରନ୍ତ ଖଣ୍ଡନା । ଘୋଷା ।
ସତ୍ୟଯୁଗେ ଦୈତ୍ୟବୀର, ବଦାଗଲ ଅନ୍ତ ତାର ।
ତା ସୁତ ପ୍ରହ୍ଲାଦକୁ ସ୍ୱର୍ଗରେ କଲ ରଚନା । ୧ ।
ତ୍ରେତା ଯୁଗେ ଦଶାନନ, ନ ଭଜିଲ ରାମ ନାମ ।
ତାହାଙ୍କୁ ମାରି ଲଙ୍କା ବିଭୀଷଣଙ୍କୁ ସ୍ଥାପନା । ୨ ।
କୃଷ୍ଣଜନମେ କଂସ କେଶୀ, ହମଲା ବକା ବକାଶି ।
ଶଚୀପତି ଗର୍ବ ଗଞ୍ଜି ଗୋପୀଙ୍କ ମନ ରଞ୍ଜନା । ୩ ।

କଳିକାଳେ ନୀଳାଚଳେ ବିଜୟ କରିଛ ହେଳେ ।
ସେ ଅଭୟ ଚରଣକୁ ଚଣ୍ଡୀଦାସର ସ୍ତବନା ।୪।

---

( ୩୭ )

ସାଧୁ ସଙ୍ଗ କର ନିତ ହେବୁ ରେ ନିର୍ମଳ ।
ନାମ ଭଜନକୁ ମନ କର ବାରବାର । ଘୋଷା ।
ଏ ମାୟା ସଂସାରେ ପଡ଼ି । ନ ଭଜିଲୁ ରାମ ହରି ।
ଅରେ କାଳ ନେବ ଧରି । ହୋଇବୁ ବେହାଲ । ୧ ।
କାମିନୀ ସଙ୍ଗତେ ମାତି । ରହିଅଛୁ ଦିବାରାତି ।
ବିଷୟ ରସରେ ମାତି । ଖାଉଛୁ ଗରଳ । ୨ ।
ଆସିଥିଲୁ ସାକ୍ଷୀ ଦେଇ । ସେ କଥା କି ମନେ ନାହିଁ ?
କଫ ବାତ ପିତ୍ତ ଘେନି । ନେବେ ହୋଇ ଠୁଳ । ୩ ।
ଶ୍ରୀଗୁରୁଙ୍କ ସେବାକର । ଏ ଭବୁଁ ହୋଇବୁ ପାର ।
ଦ୍ୱିଜ ଚଣ୍ଡୀଦାସ କହେ । ବିଶ୍ୱାସଟି ମୂଳ । ୪ ।

---

( ୩୮ )

ଫାଟିଲା ତିମିର ଦେଖ, ଉଦେ ହେଲେ ଭାନୁ ।
ତାରାଗଣ ଲୁପ୍ତ ହେଲେ, ଉଠ କଳାକାହ୍ନୁ । ଘୋଷା ।
ପୂର୍ବ ଆକାଶ ନିର୍ମଳ, ବୃକ୍ଷେ ରାବଇ କୋକିଳ ।
ପ୍ରଫୁଲ୍ଲ ହେଲେ କମଳ ଉଠ ଚଳାଚଳ ମନୁ । ୧ ।
କାକ କୁକ୍‌କୁଟ ଧ୍ୱନି, ବିଶେଷରେ ଶୁଭିଲାଣି ।
ଶମ୍ଭୁ ଆଳେ ବାଜେ କମ୍ବୁ, ଭେରୀ ଶିଙ୍ଗା ନାଦ ବେଣୁ ।୨।
ଗୋପୁର ଟଚଗ୍ରୁ ବେଳ, ନିଦ୍ରାଅଛନ୍ତି ଉତ୍ତର
ଶ୍ୟାମ୍ଭାଳି ମନ୍ଦିର, ଚିମା ଧଙ୍ଗରେଇ [illegible] । ୩ ।

ଦ୍ୱାରେ ଗୋପସୁତଗଣ; ଡାକନ୍ତି ନାମ ଧଶଣ ।
ଅପ ବେଗେ କାହ୍ନୁ ଯିବା, ନିଦ୍ରା ବେଗେ ତେଜ ମନୁ ।୪।
ଶୁଣି ମାତାଙ୍କ ଉତ୍ତର, ନିଦ୍ରା ତେଜ ବଂଶୀଧର ।
ମୁଖ ପ୍ରକ୍ଷାଳନ୍ତି କହେ ଚଣ୍ଡୀଦାସ ଭାବ ମନୁ । ୫ ।



( ୩୯ )

ଲାଗିଛି ମାଳା ନୀଳାଚଳରେ ।
ଅଜାବ ଖାଉଛି ଯିବ ସଙ୍ଗରେ । ପଦ ।

ଏକ ବନା ବାଟ ଚଉକ କବାଟ ଯିବାକୁ ସଙ୍କଟ ସୁଚୀରନ୍ଧ୍ରରେ ।
ଷଡ଼ଗୁଣ ଭେଦ ଅଷ୍ଟାଙ୍ଗକୁ ସାଧି ଦ୍ୱାର ଧୀର ସାଧି ଷଡ଼ଅକ୍ଷରେ ।
ବଟ ପୃଷ୍ଠରେ, ବନା ଯନ୍ତ୍ରରେ, ବାଜଣା ବାଜୁଛି ଗୋଲୋକ ପୁରେ ।
ବଙ୍କନାଳ ପାଣି ଉଲଟି ଉଜାଣି, ରହୁଛି ତ୍ରିବେଣୀ ତଥି ମଧ୍ୟରେ ।
ସତ୍ତ୍ୱ, ରଜ, ତମ ଗୁଣମଠ ଧାମ ଲାଗିଛି ଭଜନ ଯାଜପୁରରେ ।
ଦୁର୍ଗା ଗୁମୁରେ, କାଳି ଖପରେ, ଦୀପ ଜଳୁଅଛି ବନା ବତୀରେ ।
ବନା ବନ୍ଧେ ଜଳ ଶୂନ୍ୟେ ରହିଅଛି ଫୁଟିଛି କମଳ ବନା ବୃକ୍ଷରେ
ଅବାରଣ ଭୂମି ବାରଣ ନୁହଇ ଷଡ଼ମୁଖୀ ଗାଈ ଚରେ ସେଠାରେ ।
ଷୋଳ ଚେରରେ, ତା କ୍ଷୀର ଝରେ, ପଞ୍ଚଆନନ ତା ଆପାନ କରେ
ଏକା ବନା ଜଳ, ଦେବାରୁ ପ୍ରବଳ ଫୁଟିଛି କମଳ ବନା ବୃକ୍ଷରେ ।
ବିପ୍ର ରାମ କହି ଅଗମ୍ୟ ଅଟଇ ଶବଦକୁ ବୁଝ ସତ୍ୟ ସପ୍ତାଙ୍ଗରେ ।
ମୂଳ ଶୂନ୍ୟରେ, ହୃଦ ପଦ୍ମରେ, ମାଳା ଗଢ଼ୁଅଛି ବନା ଯନ୍ତ୍ରରେ ॥



( ୪୦ )

ଜୀବ ପରମ ଦୁହିଙ୍କର ବସ୍ତର ॥
ହେଉ ନ ଥିଲେ ଗୁରୁ ଦ୍ୱାରେ ପସ୍ତର । ଘୋଷା ।

ଘରେ ପୂରିଅଛି ତୋର ସୁନା ଭଣ୍ଡାର । ମାଇଲେ ଚୋରବର ଘରେ

ପଶିବ ଦ୍ୱାର । ପାଞ୍ଚ ପଚିଶ ଲୋକ, ଅବଶ୍ୟ ଦେବେ ଦୁଃଖ, ଷଡ଼ ଅରି ମିଶି କରିବେ ଝିଙ୍କାଝିଙ୍କି, ଦୟା ନାହିଁ ତାଙ୍କର, ଦୁଃଖ ଦେବେ ଅପାର, ଗୁଡରେ ଲଦ୍‌ଦେବେ ପଥର ।୧।

ସୁମନ ମିଶିଲଣି କୁମନ ସଙ୍ଗର, ସୁମନକୁ କୁମନ ମାରଇ ବଗ୍ଧୁର, ସେମାନେ ଘାଟରୁଠ, ରୁନ୍ଧ ଦେବେ ସେ ବାଟ, ଅବଇ ମଣ୍ଡଳକୁ ଜନେ କରିବେ ନଷ୍ଟ । ଆସି ମିଳିବେ ଖଣ୍ଡ, ଭାଙ୍ଗିବେ ଗୋଲ୍‌ହାଟ, ଲୁଟିକରିଣ ନେବେ ବଜାର ।୨।

ଅଖଣ୍ଡଳ ଦୀପ ଲିଭି ହେବ ଅନ୍ଧାର, ଆପେ ଚଳିଗଲେ ବୁଡ଼ିଯିବ ସଂସାର । ସେ ମୋକ୍ଷଗଡ ଜୀବ, ଘାଟେ ଅଚଳ ହେବ, ଅଣଗ୍ରୁଣ ବନ୍ଧିବ, ମେରୁକୁ ଉଡ଼ାଇବ, ପ୍ରଳୟକାଳେ ନାବ, କେଉଁଠି ସ୍ଥିତ ହେବ, ପାଣି ପଶିବ ଶୂନ୍ୟମନ୍ଦର ।୩।

ଏତେ ବଗୁରଣ ଘରୁ ହୁଅ ବାହାର, କ କରିବା ଭିଆଣ ଯା ନନ୍ଦକୁମର । କହଇ ଗଙ୍ଗାଧର, ବୟିକରମା ଗ୍ରୁର, ଚିହ୍ନଣ ଦନ କରି ସାରିଲି ଷଣକର, ପାଣି ଫୋଟକାଠାରୁ ସ୍ଥାନ କଲି ଶରୀର, ଶୂନ୍ୟ ପବନ ମିଶେ ଶୂନ୍ୟର ।୪।

---

( ୪୧ )

ତାଳ—ଯତି ।

ଫନ୍ଦା ଲଗିଛି ହୋ ହରିନାମ କଆରେ ।
ନହରି କଲ୍‌ପେ କରୁଅଛୁ ବଣା ଧୋଇଦେଲି ନିରନ୍ତରେ ।ପଦ।
ଗୁଣ୍ଡକଲି ମୁଣ୍ଡା ଜିହ୍ୱା କଲି ଫାଳ ଦଉଡ଼ି ବଳିଲି କେଶ ।
ଦୁଇ ବାହୁ ଦୁଇ ବଳଦ ଯୋଖିଲି ହୃଦରୁ କାଢ଼ିଲି ଈଶ ।୧।
ପାଞ୍ଚ ପଚିଶଙ୍କୁ କେହୁରି କରିଣ କରିଥିଲି ଫନ୍ଦା ଖଣ୍ଡେ ।
ତ୍ରିବେଣୀ ନଦୀରୁ ପାଣି ବୁହାଇଲି ବୋହିଗଲା ଗ୍ରଜଦାଣ୍ଡେ ।୨।
ପାଞ୍ଚମନ ତହିଁ ଧାନ ବୁଣ କଲି ଚର୍ମକୁ କଲି ମୁଁ ହର ।

ନବଦ୍ୱାରେ ଜବ ଗଲଆ ପଡ଼ିଲ୍ଲ ବୋହୂଗଲ୍ଲ ସବୁ ନୀର ।୩।
ପଚଣ ମୂଲ୍ୟଆ ଧାନ ବାଛୁ ଗଲେ ହରାଇ ଅଇଲେ ମୂଲ୍ ।
ତ୍ରିବେଣୀ ନଦୀ ଯେ ତଟ୍ଟରେ ବଡିଲ୍ଲ ଖାଇଗଲ୍ଲ ବେନ କୂଳ ।୪।
ଯେତେବେଳେ କ୍ଷେତ ପୋଖତ ହୋଇଲ ଚୈତନ୍ୟ ଜଗୁଆ ଥିଲ୍ଲ
କହେ ପର୍ଶୁରାମ ଚୁଟିଆ ମୂଷା ତା ବନ୍ଧନ ଚୁଡ଼ାଇ ଦେଲା ।୫।

---

( ୪୨ )

ତାଳ—ଯତ୍

ଜ୍ଞାନ ହୋ ! କହ ବଷମ ସନ୍ଧି ।
କେଉଁ କମଳରେ ଭ୍ରମର ବନ୍ଧ । ପଦ ।
କାଳନ୍ଦୀ ହ୍ରଦେ କାହିଁ ପାରବଶୀ । କାହିଁ ସିଂହକୁ ଗିଳୁଅଛୁ ଶଶୀ ।
ହସ୍ତୀ ମଣ୍ଡୁକୀ କେଉଁଠାରେ ଯୁଦ୍ଧ । କମଳେ ଫୁଟିଛୁ ଯେ କୋକନଦ ।
ଶୂନ୍ୟମଣ୍ଡପେ କାହିଁ ବାଜେ ବୀଣା । କେଉଁଠାରେ ଅଛୁ ଗୋପପାଟଣା
କହଇ ଗୋରେଖ ଶୁଣରେ ଭାଇ । ସଦଗୁରୁସେବା କଲେ ତା ପାଇ ।

---

( ୪୩ )

ସୁମନ ରେ ! କଷ୍ଟସ୍ଥ ଏ ଜୀବ ଯିବ ।
ସାଧୁସଙ୍ଗ ପ୍ରୀତ ଦାନ ଧ୍ୟାନ କୀର୍ତ୍ତି ଏହମାନ ରହିଥିବ ! ପଦ ।
ବାଳୁତ ପୋଏ ଯେ ଖେଳଘର କର ଖେଳୁଥାନ୍ତି ବସି ନିତ ।
ଖେଳ ସରଲେ ଚରଣେ ଭାଙ୍ଗିଦ୍ୟନ୍ତି ତୋହର ଏ ଦେହମତ ।୧।
ଗୃହେ ଯେତେ ଧନ ଯୁବତୀ ରତନ ଏ ମାନ ଜୁ ଭୁଞ୍ଜୁ ଦେଖି ।
ଗୃହେ ଅନ୍ତଃକାଳେ ଦହିବେ ଅନଳେ କେହି ନ ପାରିବେ ରଖି ।
ମୋହର ମୋହର ବୋଲୁଅଛୁ ଜୁହି ମୋହମାୟା ସଂସାରକୁ ।
ମଲେ ଜୁ ଆଉ କ ଲେଉଟି ଦେଖିବୁ ପୀରତ ବନ୍ଧୁଜନଙ୍କୁ ।୩।

ଭଜ ରାମକୃଷ୍ଣ ଗୋବିନ୍ଦ ଗୋପାଳ ଚନ୍ଦ୍ରାକରାମନ ନିତ୍ୟ ।
କହେ ସାଲବେଗ ଜାତିରେ ଯବନ ମନରେ ନ କର ଖିନ୍ନ ।୪।

( ୪୪ )

ତାଳ—ଏକତାଳି ।

କଳାକୃଷ୍ଣ କମଳ ଆଖି । ଡାକିଲେ ନ ଶୁଣ କାହିଁ ପାଇଁକି ।ପଦ।
ଶ୍ରୀନୀଳକନ୍ଦରେ ବସେ କରିଅଛ ମିଛେ ଭଣ୍ଡିବାକୁ ଲୋଡ଼ୁଅଛ କି ।
ଅହଲ୍ୟା ତାରଣ ଭୟ ନିବାରଣ ବାଳୀକି ମାରି ରଖିଲ ସୁଗ୍ରୀବକି ।
ମହା ବଳବନ୍ତ ବଣ୍ଡିବାର ସୁତ ଛେଦି ପକାଇଲ ଦଶଶିରକି ।
ଲକ୍ଷ ଯୋଜନରେ ଗଜ ଡାକ ଦେଲା ସେ ଡାକ ଶୁଣିଲ ପଶାଖେଳେ କି
କୁରୁସଭାମଧ୍ୟେ ଦ୍ରୌପଦୀ ଡାକିଲେ ତାକୁ କୋଟି ବସ୍ତ୍ର ଦେଇଥିଲ କି ।
ଭାରତ ଯୁଦ୍ଧରେ ଭରଥିଆ ପକ୍ଷୀ ଘଣ୍ଟ ଘୋଡ଼ାଇଣ ରଖିଥିଲ କି ॥
ଭାରତ ଯୁଦ୍ଧରେ ଅର୍ଜୁନ ରଥରେ ଆପଣେ ସାରଥି ହୋଇଥିଲ କି ।
ଭଣଇ ଭରତ ପଦ୍ମ ପାଦେ ଚିତ୍ତ ମୋ ମନ ରହିବ ନୀଳାଚଳେ କି ॥

( ୪୫ )

ମନ ! ହରି ନ ଭଜୁ କାହିଁପାଇଁକି ।
ଧନେ ବାନ୍ଧିନେବ ଜନ୍ମସାଇଁକି । ପଦ ।

ଧନ ଦାରା ସୁତ ସବୁ ମିଳନ୍ତି । ମଲାବେଳେ କାନ୍ଦୁଥିବେ ଶୋକ କରନ୍ତି । ଛଅଖଣ୍ଡ କାଠପରେ, ଶୁଆଇବେ ତହିଁରେ । ଘେନିଣ ଯିବେ ପାଞ୍ଚ ସାତଜଣ ।୧।

ଯେତେବେଳେ ଘରୁ ଘେନିଯିବେ ଚୋଟେଇ । ଗୋମୟ ଗୋଳି ପଛେ ସିଞ୍ଚୁ ଥିବେଟି । ଶମଶାନକୁ ନେଇ । ପୁଣ୍ଡ ଦେବେ ଲଗାଇ । ମୁଖରେ ତୋର ଅଗ୍ନି ଦେବେଟି । ୨ ।

ଖୁଣ୍ଟାଡ଼ାଙ୍ଗ ଯେନ ତୋତେ କେଶ୍ଚ ଥିବେଟି । ଉଡ଼ବଡ଼ ଡାକୁଂ ଥିବ ଗଣ୍ଡି ହାଉଟି । ଅଗ୍ନି ମାଂସକୁ ଖାଇ । ଶବ ପିବ ମିଳାଇ । କବଳା ଝଣ୍ଡି ଚଣ୍ଡୀ ପାଉଁଟି । ୩ ।

ସ୍ନାହାନ କରଣ ଶୁଚିମନ୍ତ୍ର ହୋଇଟି । ଘରକୁ ଆସିଣ ନମାଇଲ ଖାଇଟି । ଶୀତଳ ଜଳ ଖାଇ; ମାଛେ ଯିବେ ପଳାଇ । ବନ୍ଧୁ କୁଟୁମ୍ବ ଝୁରୁଥିବେଟି । ୪ ।

ବାରଦନ ଯେ ସ୍ବାକର୍ମ ସବୁ ସାଉଟି । ଯେ ଯାହା ଘରକୁ ଯିବେ ବିଦାହୋଇଟି । ଚଣ୍ଡୀଦାସ କହଇ, ହର ଭଜରେ ଭାଇ, ନାହିଁ ତା ବିନା ଅନ୍ୟ ଗତିଟି । ୫ ।

---

( ୪୨ )

ଷଡ଼ରୂପ କେବଣ ଠାର  ହାଟ ବସେ କେଉଁଠାର
ଶବଦ ଉଠନ୍ତି କାହିଁ  ଜିବ କାହାକୁ ଜପଇ ।
ହଳ କହ ଯାଇ ଯାଇ ବୁଲୁଅଛୁ କେଉଁ ଦଅଁ । ୧ ।
ବିଷମ ଅର୍ଗଳ ଦ୍ୱାର  ହୋଇ ମୋହମାୟା ତାର
ରସ ଉଦ୍ଭବ ଲାଗିଛୁ  ଜାଣିଥିଲେ କହ କିଛୁ
ମହାମତ୍ତ ମତ୍ତଗଜ କେଉଁଠାରେ ହେଲୁ ବନ୍ଧ । ୨ ।
ଭାଗୀରଥି ଗଙ୍ଗା ହୋଇ  ବାରେଣୀ ପଡ଼ୁଛୁ କାହିଁ
ଫୁଟିଛୁ କେବଣ ପୁଷ୍ପ  ପାଖୁଡ଼ାରେ ନାହିଁ ବାସ
ଅନାସର, ଅନାମ କ ଦଅଁ ଅଛୁ କେଉଁଠାରେ । ୩ ।
ଧ୍ୱନି କାହିଁରୁ ହୋଇଲା  ଦବାନଳ କାହୁଁ ହେଲା
ଝୋଟକ ଘଟରେ ଆତଯାତ  ତ୍ରିଗୁଣେ ହୋଇ ଯନ୍ତ୍ରିତ
ନାମ କହ, ନାମକୁ ଜପୁଣ ଅଛୁ କେଉଁ ଦଅଁ । ୪ ।
ଡାକ୍ତୁଣୀ ଭିତରେ ବାସ  ଡେଲ ଗୋଟା ପଞ୍ଚଦଶ
ଠଣା କର ଉଦଅନ୍ତ  ଟାଣି ଯେନପିବ ବାଛୁ
ଅଣାମୃତ ଅଣାକାରେ [illegible] ଅଛୁ ବାଣାଯନ୍ତ୍ର । ୫ ।

ଝାଂକୁର ଭିତରେ ଦର୍ଶ ଜାତ କି ଅଜାତ କହ
ଛଡ଼ା ହୋଇ ଏକ ପାଦ ଗ୍ରେର ହୋଇ କରେ ନାଦ
ଓସ୍ତ ପରେ ଅନନ୍ତ ଗୃପତେ ଫଣୀ କେଉଁଠାରେ । ୭ ।
ଘରେ କି ଦାହାରେ ଦର୍ଶ ଗୃପତ ନ କଣ କହ
ଖଟିଥିଲେ ଗୁରୁପାଦ କହିବ ଏଥିର ଭେଦ
କର ଯୋଡ଼ି, କହେ ଗଙ୍ଗାଧର ସାଧୁପାଦେ ପଡ଼ି । ୭ ।

———

( ୪୭ )

ଆହାରେ ଦୁର୍ବୁଦ୍ଧି ମନ ! ମୁକ୍ତ ହେବୁ କାହିଁ ରେ ?
ଏ ଦୁର୍ଲ୍ଲଭ ଜନ୍ମେ ନ ଭଜିଲୁ ଶ୍ରୀବତ୍ସ ସ୍ୱାମୀ ରେ । ପଦ ।

ପ୍ରଥମ ସମୟେ ମାତା ଗର୍ଭେ ଜଳୁ ବାସରେ । ପୁଣ୍ୟ ବଳେ ବଞ୍ଚିଣ ରହିଲୁ ଦଶମାସରେ । ମାତା ପିତା ସ୍ନେହ ବଳ କୋଳରେ, ଧନ ବଞ୍ଚିଲୁ ବାଳକ ମେଳରେ । ହସୁ ଖେଳୁ ବସୁ ଶିଶୁ ସଙ୍ଗରେ, ସେ ସମୟ ତ ଗଲା ଅକାରଣ । ୧ ।

ଦ୍ୱିତୀୟ ସମୟେ ଯୁବା ଅବସ୍ଥା ପରବେଶରେ । ମନେ ପ୍ରତେ ନାହିଁ ତାର ସିବୁ ବେଳ ନାଶରେ । ଭାମିନୀ ସଙ୍ଗେ ରଙ୍ଗେ ନେଲୁ ଧନ, ଜିହ୍ୱା ଲୋଭେ ନାନା ଦ୍ରବ୍ୟକୁ ମନ, ମୃତ୍ତିକା ପିଣ୍ଡକୁ କଲୁ ଯତନ । ନ ବୋଲୁ ଏତ ଜୋଇଡ ଦହନ । ୨ ।

ତୃତୀୟ ସମୟ ପୁତ୍ରାପୁତ୍ର ଅନ୍ୟ ଆସ୍ଥରେ । ଛନ୍ଦକୁଟେ ଧନ ଅର୍ଜ୍ଜି, ଦର୍ଦ୍ଧି ନଜ କାସ୍ଥରେ ହିଂସା ଅହଙ୍କାର ତମ ଆବୋର । ବୋଲୁଥା ମୋତେ କେ ଅବା ସର । ମୋହ ଘର ବୋଲୁଅଛୁ ଆବୋର । ତୋହର ଘର ତ ନୋହେ ତୋହର । ୩ ।

ଚତୁର୍ଥ ସମୟେ ବଳ ବପୁ ତୁଟି ଯିବରେ । ବାଳ ବୃଦ୍ଧମତ ହୋଇ ଚଞ୍ଚଳ ହୋଇବ ରେ । ଅସ୍ଥି ଚର୍ମରୁ ମାଂସ ଶୁଖିଯିବ । ନେତ୍ର ଅଦୃଶ୍ୟ

ଦେହ ଝଡ଼ା ହେବ । ମେରୁଆଗ ବନ୍ଧ ହୃଦ ଶୁଖିବ । ବ୍ୟାଧି ପେଷି ଯମ ପଘଣ ନେବ । ୪ ।
ଦଣ୍ଡପାଣି ବଦ୍ଧତ ଅବସ୍ଥା ତୋତେ ଦେଇରେ । ନର୍କ କୁଣ୍ଡେ ପକା-ଇବେ କୃମିରୂପେ ନେଇରେ । ସେ କୁଣ୍ଡୁ ନିସ୍ତାର ହୋଇବୁ ଯେବେ, କଳାଶ୍ରୀମୁଖ ଆଶ୍ରେ କର ତେବେ । ଭାଇ ବନ୍ଧୁ ତୋର ସଙ୍ଗେ ନ ଯିବେ । ଜଗା ଦାସଙ୍କୁ ହରି ଉଦ୍ଧାରିବେ । ୫ ।

---

## ( ୪୮ )

ବଂଶୀଧର କର ଭଜନା । ବଦନ ଦୁଆରେ ଯାହାର ଠଣା । ପଦ ।
ବେଦ ନଦୀମଧ୍ୟେ କାଳନ୍ଦୀ ହ୍ରଦେ, ଫୁଟିଅଛୁ ଦେଖ କମଳ ସିନା ।
ବାସନା ଘେନଣ ଭ୍ରମର ବନ୍ଧତ, ସେଠାରେ ହୋଇଲୁ ଖବରେ କଣା ॥
ଷଟଦ ମଣ୍ଡଳ ସେ ଯେ ନିତ୍ୟସ୍ଥଳ, ଲେଶ ନ ପାଇଲେ ଶିବ ଶେଷନା ।
ବାସୁକୀ ବାସବ ଶୁକ ସନଦେବ ବ୍ରହ୍ମାଦେବ ଭନ୍ଧି ହୋଇଲେ ବଣା ॥
ବଙ୍କୁନାଳ ଭେଦ ଦ୍ୱୟଦଳ ଶୋଧି, ଅମନର କର ମନ ଖବନା ।
ଅଣା ବଣ ପରେ ଶ୍ରୀବୃନ୍ଦାବନରେ, ଦେଖ ରୁ ରାହାସଲୀଳା ନେହେନା ॥
ବେଣୁ ଧ୍ୱନି ଯରେ ଶୁଣିତ ତରଳ, ଯଂଦଶ ଭବନୁ କାର୍ତ୍ତ ବ୍ରହ୍ମନା ।
ବହ୍ନେଲ ଆନନ୍ଦ ରହି ସଦାନନ୍ଦ ବ୍ରହ୍ମସୁଖ ପାଇ ନାହିଁ ଚେତନା ॥
ବାର ବୃନ୍ଦ ବନ ହେତୁକର ଚନ୍ଦ୍ର ଚନ୍ଦ୍ରିଲେ ପାଇବୁ ନଷ୍ଟେ କାରଣା ।
ବ୍ରଜରାଜସୁତ ଶ୍ରୀଚରଣେ ଚଢ଼, ଦାସ ଦୁଃଖୀଶ୍ୟାମ ଦାସ ଶରଣା ॥

---

## ( ୪୯ )

ହସ୍ତୀ ଅସୁଥିଲା ମଣ୍ଡୁକା ଗିଳିଲା ମହାରାଜ ଡାକ ଦେଲା । ପଦ ।
ତଇଳ ପକାନ୍ତେ ଦୀପ ଲିଭଯାନ୍ତେ ପାଣିରେ ଦୀପ ଜଳିଲା ସେ ହସ୍ତୀ କାହିଁ ରହିଲା । ତା'କୁ କ ରୂପେ ବେଙ୍ଗ ଗିଳିଲା । ୧

ଚନ୍ଦ୍ର ବାସୁଡ଼ାକୁ ତା ଚନ୍ଦ୍ର ଗିଳାଇ ଚମ୍ପାକୁ ଗିଳେ ଲଙ୍ଗଳ ।
ସାତ ସିନ୍ଧୁ ଜଳ କୂର୍ମ ଗିଳିଦେଲା ବୃକ୍ଷକୁ ଗିଳେ ତା ଫଳ ସେ ବୃକ୍ଷ
ଗଛୁ ହୋଇଲା । ଫଳ ତେଜି ବୃକ୍ଷ ପଲ୍ଲବିଲା । ୨ ।
ଜ୍ୱାଇଁ ମଲା ଝିଅ ବିଧବା ନୋହିଲା ଏହା ଦେଖିଅଛ କାହିଁ ।
ଦେଢ଼ଶୁର ସାଇ ବୋହୂରେ ପୀରତି କହିବାକୁ ଲଜ୍ଜା ଏହି ସେ ସ୍ୱବ
କ ରୂପେ ହେଲା । ତାକୁ ଛୁଇଁବା ଯୋଗ୍ୟ ନୋହିଲା । ୩ ।
ଷଡ଼ମୁଖୀ ଗାଈ ଶୂନ୍ୟେ ପହ୍ନାଉଛି ବାଛୁରି ପିଏ ତା ଲକ୍ଷ ।
ସାତପୁଅ ବେଇ ନାମ ନ ପଢ଼ିଲା ଜଗତେ ହୋଇଲା ବାଞ୍ଝ ସେ ।
ବାଞ୍ଝ କ ରୂପେ ହେଲା । ସାତେ ସାନପୁଅ ଜନ୍ମକଲା । ୪ ।
ଅଣ୍ଡିରି ହଂସ ଯେ ଡିମ୍ବ ପାରିଗଲା ଡିମ୍ବେ ଦୁଇ ଦୁଇ ଛୁଆ ।
ଅଧିକ ଅଣ୍ଡିରି ଅଧେ ନୀଳବର୍ଣ୍ଣ ଦେଖି କହିଲୁ ଅସୁଭୂଆ ସେ ।
ଏହା ଦେଖାତ ନାହିଁ । ନୀଳବର୍ଣ୍ଣ ହେଲା କାହିଁପାଇଁ । ୫ ।
ଶୁଖିଲା ପଙ୍କରେ ପଦ୍ମ ଫୁଟିଅଛି ଭ୍ରମର ଚହିଁକି ବାଇ ।
ଦୀନକୃଷ୍ଣ ଦାସ ଗୀତରେ ଭଣିଲେ ଅର୍ଥଟି ଦେବ ବୁଝାଇ ସେ ।
ହଂସ ଶୂନ୍ୟେ ଉଡ଼ିଲା । ଏକା କାହା ନାମ ଜପୁଥିଲା । ୬ ।

— — —

( ୫୦ )

ତାଳ — ଯତି ।

ହରିନାମେ କି ରସ ଅଛି ।
ପାନ କଲା ଲୋକ ସିନା ଜାଣିଛି । ପଦ ।

ଶୂନ୍ୟରୁ ପବନ ପବନରୁ ନାଦ ନାଦରୁ ବିନ୍ଦୁ ଜନମ ହୋଇଛି ।
ବିନ୍ଦୁମଧ୍ୟେ ଜଳ ଜଳମଧ୍ୟେ ଛିତି ତଥିପରେ ଯାର ଲୀଳା ଲାଗିଛି
ସ୍ଥାବର ଜଙ୍ଗମ କୀଟ ପତଙ୍ଗାଦି ଯେଉଁ ନାମେ ମନ୍ତ୍ର ତନ୍ତ୍ର ହୋଇଛି ।
ଷଟଚକ୍ର ଭେଦ ତ୍ରିଗୁଣରେ ଦେଖ ଯେ ନାମ ଧରିଲେ ନୂଚେ ମୁରୁଛି ।

ବ୍ରହ୍ମାଦି ନାରଦ ଶୁକ ସନକାଦି ଯେଉଁ ନାମ ସଦା ଜପ କରୁଛୁ ॥
ଯେ ନାମକୁ ଧରି ବିଭୀଷଣ ହନୁ ଅମର ହୋଇଛୁ ଭୁଷଣ୍ଡ ପକ୍ଷୀ । ୩ ।
ଅତନୁ ରସରେ ତୋ ତନୁ ମିଶାଇ ଶୁଦ୍ଧଭାବେ ଭଜ ଅମର ବସ୍ତ ।
କହଇ ବାହୁଡ଼ା ଶ୍ରୀଗୁରୁ ଶରଣ ନ ଥିଲେ ମୁକ୍ତିରୁ ନ ମିଳେ କିଛୁ ॥

---

( ୫୯ )

କମଳ ଦଳ ଅମ୍ବୁଜ ଭଜ ।
କୃଷ୍ଣ ଅଟେ ସେହୁ ଯୁଗଳ ରାଜ । ଘୋଷା
ବ୍ରହ୍ମବେଦଙ୍କର ଆସ୍ଥାନ । ଗୁରୁ ସେବ ସେ ସ୍ଥାନ ଚିହ୍ନ ।
ଚିହ୍ନିଲେ ମୁକତି ଲଭିବୁ ମୁକତି ପଞ୍ଚମ ବେଦରେ ଦେବାଧିରାଜ । ୧ ।
ମନ ଚଇତନ କରଣ । ନାହିଁ ତହିଁ ଜନ୍ମ ମରଣ ।
ଅଷ୍ଟସଖୀ ଘେନି ଲୀଳା କରୁଛନ୍ତି କିଶୋରୀ ସଙ୍ଗତେ କିଶୋର ରାଜା
ରାଧାକୃଷ୍ଣ ନିତ୍ୟ ବିହାର । କହିବାକୁ କ୍ଷମ କାହାର ।
ସିଦ୍ଧ ଦେବେଶ୍ୱର ହେଲେ ଅଗୋଚର ଜାଣନ୍ତି ଭୁଷଣ୍ଡ ଭକତରାଜ ।
ବାଞ୍ଛାବଟ ସେ କଳ୍ପବଟ । ବଂଶୀବେଦ ନାଶନ ଘାଟ ।
ସେ ଘାଟରେ ମହାମାୟା ବସିଛନ୍ତି ବୋଲେ ଚଣ୍ଡୀଦାସ କର ନିହାଜ ॥

---

( ୬୦ )

✓ ଅରେ ମନ ! ଚାଲ ଯିବା । ଚକାନୟନ ଦେଖିବା ।
ଶଙ୍ଖନାଭିମଣ୍ଡଳରେ ବେନି ନେତ୍ର ପଖାଳିବା । ପଦ ।
ଘାଟରେ ଘାଟମଙ୍ଗଳା । ଦେଖିବା ଅଠର ନଳା ।
ପଞ୍ଚମନ ଏକ ମେଳ । ନରେନ୍ଦ୍ରେ ସ୍ନାନ କରିବା । ୧ ।
ପହଞ୍ଚିବା ବଡ଼ ଦାଣ୍ଡେ । ସେ ରେଣୁ ଘାଇବା ତୁଣ୍ଡେ ।
ଛତାତଳେ ରହି ଦଣ୍ଡେ । ସାଧୁଙ୍କ ସେବା କରିବା । ୨ ।
ସିଂହଦ୍ୱାରେ ଭିଡ଼ାଭିଡ଼ । ଗର୍ଜୁଅଛୁ ବେତ ବାଡ଼ ।

ଠେଲି ଦେଇ ଚାଲିଯିବା । ବେତ ବାଜିଲେ ସହିବା । ୩ ।
ବାଇଶି ପାବଛୁ ପକା । କୈବଲ୍ୟ ହେଉଛୁ ବିକା ।
ହାଣ୍ଡିକେ ପଡ଼େ ସିଦ୍ଧକା । ମନରଙ୍କା ଛଡ଼ାଇବା । ୪ ।
ଗରୁଡ଼ ପଛରେ ଦେଖ । ଦିଶୁଛୁ କଳା ଶ୍ରୀମୁଖ ।
କହଇ ସାରଆ ଭକ । ବଳରାମଙ୍କୁ କହିବା । ୫ ।

---

( ୫୩ )

ଜଗବନ୍ଧୁ ହେ ଗୋସାଇଁ ।
ତୁମ୍ଭ ଶ୍ରୀଚରଣ ବିନୁ ଅନ୍ୟ ଆଶ୍ରେ ନାହିଁ । ପଦ ।
ସାତଶ ପଞ୍ଚାଶ କୋଶ ଚାଲି ନ ପାରଇ ।
ମୋହ ସିବାଯାଏ ନନ୍ଦଘୋଷେ ଥିବ ରହି । ୧ ।
ରଥ ଚାରପାଶେ ଲମ୍ବେ ମୁକୁତା'ର ଝରା ।
ଝଲମଲ ଦିଶୁଥାଇ ପ୍ରଭୁ ଚକାଡ଼ୋଳା । ୨ ।
ବାଇଶି ପାବଛୁ ତଳେ ବିକା ହୁଏ ଭାତ ।
ଦର୍ଶନ କେତେଣିକ ଆଉ କୈବଲ୍ୟ ମୁକତ ।
ଆଗେ ଚାଲେ ବଳଭଦ୍ର ମଧ୍ୟେ ଚାନ୍ଦମୁହାଁ ।
ପଛେ ଆସୁଛୁ କାଳିଆ ଗହଳ ଲଗାଇ । ୪ ।
କହେ ସାଲବେଗ ହୀନ ଜାତରେ ଯବନ ।
ଏହି ମୋତେ ଆଜ୍ଞା ହେବ ଶୀଘ୍ର ବୃନ୍ଦାବନ । ୫ ।

---

( ୫୪ )

ଆରେ ବାଇବର । ବାଟ ବଢ଼ାଧର ଖଣ୍ଡି ସଜକର । ଘୋଷା ।
ନଳିନୀ ପତ୍ରରେ ଯେସନ୍ତେ ନୀର । ପବନ ବହିଲେ ଢଳ ଢଳ ।
କାହିଁରେ ମାଡ଼ଛୁ କିଛୁ ନ ବୁଝିଛୁ । ଜଳବିମ୍ବ ପ୍ରାୟେ ଜୀବ ତୋର ॥
ଜନନୀ ଜଠରେ ଥିଲୁ ରହି । କି କି ଆଣିଥିଲୁ ସଙ୍ଗେ ବୁହି ।

ଯିବା ବେଳେ ତୋର ସଙ୍ଗେ କେ ନ ଯିବେ କ ମଟି ପଥକୁ ଶାଖା ତୋର
ଏଗାର ଧନକୁ ଲପ୍ଶ କର। ବନ୍ଧୁ ବାନ୍ଧବାଦ ହେବେ ମେଳ।
ତୋର ଲାଗି ମେଲା ମହୋତ୍ସବ କରି ବାରଦନେ ଯିବେ ଯେଝାଘର ॥
ପିତା କାନ୍ଦୁଥିବେ ବସି ଘର । ପୋଷଣାହାରୀ ମୋ ଗଲା ଦୂର
ଗର୍ଭଧାରୀ ତୋର ବସି କାନ୍ଦୁଥିବେ କ୍ଷୀର ଦେଇଥିଲି ତୋ ଭୁଣ୍ଡର ॥
ବାଲ୍ୟ ବନ୍ଧଠାରେ କଲୁ ଘର। ମାଣବ ଲହରୀ ହେବ ଜଳ।
ନଗୀନ ବାଇଆ ଜଳରେ ଖସୁଛୁ ସାଧୁ ଜନମାନେ ପାର କର। ୫ ।

——

( ୫୫ )

ଜୟ ଜଗବନ୍ଧୁ ହେ ଯଦୁନନ୍ଦନ।
ବ୍ରଜବାଳୀ ହୃଦତଟ ଚନ୍ଦନ। ଘୋଷା।
ବଡ଼ ଦେଉଳେ ବଦ୍ବାର। ବଡ଼ ଚଡା ବଢ଼େ ଚୂଳ। କି ଶୋଭା
ପାଉଛୁ କଳା ବଦନ। ୧। ସେ ଯେଉଁ ଅଳକାପନ୍ତି। ଦେଖି ଭୁଲି
ଯିବେ ଯତି। ମୁନିଜନଙ୍କର ମନମୋହନ। ୨। ବଡ଼ ବଡ଼ ଚକା-
ଆଖି। ବଳାଆର ଭୁଜ ଦେଖି। ତହିଁରେ ରହିଲା ଲଖି ମୋ ମନ। ୩।
ସେ ଯେଉଁ ରଙ୍ଗା ଅଧର। ପୂରି ରହିଛୁ ମଧୁର। ଗଳେ ଗଜମୋତି
ଅତି ଶୋଭନ। ୪। କଟିତଟେ ପାଟମ୍ବୁମା। ଓଢଣି ତନୁକମା
କି ଶୋଭା ଦଶୁଛୁ ରେଖା ଚ୍ଚନ୍ଦନ। ୫ ଶ୍ରୀ ଜଗନ୍ନାଥ ଚରଣେ।
ମନ ରହୁ ଅନୁକ୍ଷଣେ। ଗୀନକୃଷ୍ଣ ଦାସ କରେ ଜଣାଣ। ୬।

——

( ୫୬ )

ତାଳ—ଖେମଟା

ଦୀନବନ୍ଧୁ ଦଇତାରି। ଦୁଃଖ ନ କଲ ମୋହରି। ହେଲି କି
[illegible] । ଲଢେ ଯୋଜନରେ

ଗଜ । ଡାକିଲ ହେ ଦେବରାଜ । ତା ଡ଼ାକକୁ ଚତୁର୍ଭୁଜ ଶୁଣିଛ ଶ୍ରବଣ ତେଣ । ୧ । କୁରୁପତି ସଭା ତଳେ । ଦ୍ରୌପଦୀ ଅଙ୍ଗ କାଳେ । କୋଟି ବସ୍ତ୍ର ଦେଇ ତାଲେ ଲଜ୍ଜାରୁ କରିଛ ପାର । ବଳବନ୍ତ ପ୍ରଭୁ ବୋଲି । ବେଳେ ମୁଁ ଅସ୍ତୁସ୍ଥ କଲି । ଦେଖୁଁ ଦେଖୁଁ ଗ୍ରସିଗଲି କେ ଏଥୁଁ କରିବ ପର ॥ ରଖ ବା ନ ରଖ ମୋତେ, ଶରଣ ତୋ ପାଦ ରତେ । କହେ ବନମାଳୀ ଗୀତେ ବସିଅଛୁ ଧ୍ୟାନକରି । ୪ ।

---

( ୫୭ )

ତାଳ—ଆଡ଼ତେମଟା ।

ଅଭଜନା ଭଜରେ ବାବୁ ! ଯେବେ ଭବୁ ତରିବୁ ।
ଦନ୍ତ ଜିହ୍ୱା ଯହିଁ ନ ଲାଗଇ ତାଙ୍କୁ ଭଜିବୁ । ପଦ ।

ଆଠ ମଠ ଷୋଳ ଘାଟ । ଗୁମ୍ଫାକୁ ଗୋଟିଏ ବାଟ । ଲଗିଛୁ ଯୋଡ଼ କବାଟ । ଫେଡ଼ ପଶିବୁ ॥ ନ ପଢ଼ି ପଢ଼ିଲ ପାଠ । ପଢ଼ା ଗୁରୁଙ୍କ ଅଭେଟ । ସିଦ୍ଧଧାଡ଼ି ତଳେ ହାଟ । କିଣି ବିକିବୁ ॥ ଚଉଦ ଭୁବନକୁ ବାହାର, ଅବନା ଗୁରୁ ଅକ୍ଷର । ଚତୁର୍ବେଦ ପଚେ ସାର । ତରିକ ଧରିବୁ । ୩ । ଜଣାବଦକୁ ଶବଦ, ବାରମ୍ବାର ଯାଏ ଭେଦ । କାଉଁରୀ ମଣ୍ଡଳ ନାଥ ତଳେ କହିବୁ ॥ ଓଁକାର ମୂଳ ଅଟଇ, ଜଗମ ସ୍ଥାନଟି ସେହି । ଜପ ମନ୍ତ୍ରମାନ ନାହିଁ ମୁଖେ ଭଜିବୁ । ୫ । ତୋ ଆଗେ କହୁଛୁ ମୁହିଁ । କା ଆଗେ କହିବୁ ନାହିଁ । ବୋଲେ କାଶୀନାଥ ଦ୍ୱିଜ ବାରେ ଭଜିବୁ ।

---

( ୫୮ )

ତାଳ—ଝଣ୍ଟ ।

ଆରେ ମନ ! ଭରମି ନ ମର ।
ଶ୍ରୀଗୁରୁ ଚରଣେ ଲଗାଅ ଶିର । ପଦ ।

ଝରୁଅଛୁ ତ୍ରିବେଣୀ ଝର, ଲସ୍ପୁକର ହେଉ ବୁ କର । ଲମ୍ବ ଲଗାଇଣ ଉଜାଣି ଟେକିଲେ କଷ୍ଟା ହୋଇଥିବ ଶରୀର ତୋର ।୧ ।

ସେହ୍ନ ସେଠି ତ୍ରିବେଣୀ ତଟ । କଳ୍ପବଟ ତହିଁ ନିକଟ । ସେ ବଟ
ମୂଳରେ ଶଙ୍କର ରହୁଛନ୍ତି ପ୍ରଗ ଯୁଗାନ୍ତରେ ବାନ୍ଧିଣ ମଠ । ୨ ।
ଆରେ ମନ ! ଆନ ନ ... ଟ । ସଦଗୁରୁ ଚରଣେ ଖଟ । ପବନ
ସଙ୍ଗତେ ମନକୁ ମିଳାଇ ଜ୍ଞାନ ଖଡ଼ଗରେ ପ୍ରକୃତି କାଟ । ୩ ।
ମନକୁ ତ୍ରିକୂଟେ ଆକଟ । ବ୍ରହ୍ମ ସଙ୍ଗେ ହୋଇବ ଭେଟ । ଆରେ
ମନ ମୋର ! ଦୁର୍ଲ୍ଲଭ ହୋଇଛି ଶରୀର ଭିତରେ ଆତ୍ମାର ଲଟ । ୪ ।
ବନ୍ଦେ ସ୍ୱାନ ସେ ଦେବାନନ୍ଦ । ଯାଚିକର ମୋତେ ଗୋବିନ୍ଦ । ଯାଚି
ଯାଚି ବୋଲି ଶରଣ ମାଗୁଛି ଉଦ୍ଧାରିବେ ମୋତେ ସେ ଆନନ୍ଦକନ୍ଦ । ୫ ।



( ୫୯ )

ତାଳ— ତ୍ରିପଟା ।

ତ୍ରିବେଣୀ ଅଛି କଳପ ବଟ । ତହିଁ ଶିଖେ କରୁଛି ନାଟ ।
କଲ୍ପନା ତୁଟାଇ ବଟକୁ ଚଢ଼ିଲେ ସେ ବଟ ମୂଳରେ ପଡ଼ିଛି
ବାଟ । ଆରେ ମନ ! ପାଇବୁ ଭେଟ । ଯୁଗଯୁଗାନ୍ତରେ ରହିବ
ହାଟ । ୧ । ତ୍ରିବେଣୀ ଅଛି ପରମହଂସ । ପୂର୍ଣ୍ଣଗିରି କରିଛି ବାସ,
ସପ୍ତ ଫେଣା ପରେ ଅନନ୍ତ ଶୟନ ପଦ୍ମପାଦୁ ଝରି ପଡ଼ୁଛି ରସ ।
ଆରେ ମନ ! ପ୍ରିଅ ପୀୟୂଷ । କାଳଦଅ ଚୂଲି ହେବୁ ପାଉଁଶ । ୨ ।
ଦୋମୁର୍ଦ୍ଧା ସାପ ଟେକିଅଛି ଫଣା । ଗର୍ଜ୍ଜନ ଶୁଣି ଦେବେ ହେଉ ନ୍ତି
ବଣା । ସେ ଫଣା ତଳେ ଶଙ୍କର ରହିଛନ୍ତି ଯୁଗ-ଯୁଗାନ୍ତରେ
ହୋଇବ ଠଣା । ଆରେ ମନ । ଲୁହ ଫୁଟୁଣା, ଶନ୍ୟ ଭୁବନରେ ରଖ
ଚେତନା । ୩ । ବନ୍ଦେ ସ୍ୱାନ ସେ ଜନାର୍ଦ୍ଦନ । ଯାଚିକର ମଧୁସୂଦନ ।
ତୁମ୍ଭ ଶ୍ରୀଚରଣେ ଶରଣ ପଶୁଛି ଶଙ୍ଖ ଚକ୍ରେ ମୋତେ କର ଦଳନ ।
ଆରେ ମନ । କର ଭଜନ । ଶ୍ରୀଗଙ୍ଗାଚରଣେ ରହୁ ମୋ ଧ୍ୟାନ । ୪ ।



( ୭୦ )

ତାଳ—ଛପକା

ଆରେ ଶୁଖା ଖଡ଼ଖଡ଼ । ମିଛମାୟାରେ ଯନ୍ତ୍ର ଦେହ ଲଡବଡ ବଡ଼ବଡ଼ । ପଦ । ଚତୁର୍ଥ ବୟସ ହେଲେ ଅନ୍ତେ । ଜନମ ହୋଇବେ ରୋଗଗ୍ରସ୍ତ । କଫ ସନ୍ନିପାତ ରୁନ୍ଧ ବାତପିତ୍ତ ତଣ୍ଟି ଶବ୍ଦ ଥିବ ଘଡ଼୍ ଘଡ଼୍ ଘଡ଼୍ ଘଡ଼ ॥ ପିଣ୍ଡରୁ ପରାଣ ଯିବ ଛାଡ଼ି । ଶମଶାନକୁ ନେବେ ଘୋଷାଡ଼ି । ଜାତି ଭାଇବନ୍ଧୁ କୁଟୁମ୍ବ ସହିତେ କାଠ ଖଣ୍ଡି ଦେବେ ନଡ଼ ବଡ଼୍ ବଡ଼ବଡ଼ । ନେଇ ଥୋଇ ଦେବେ ଚନ୍ଦ୍ରିପରେ । ଦସ୍ତା ନ ବନ୍ଧିବେ କଣ୍ଠରେ । ଚଳମୁଣ୍ଡା କରି ହାତ ଗୋଡ଼ ପନ୍ତି ଭାଙ୍ଗି ଦେବେ ଧରି ମଡ଼୍ ମଡ଼୍ ମଡ଼୍ ମଡ଼୍ । ୩ । ଦଶମ ଦିନରେ ଦଶାହ । ଏଗାରଦିନେ କୁଟୁମ୍ବ ତୋର । ବାରଦିନେ ଅନ୍ନବ୍ୟଞ୍ଜନ କ୍ଷୀରସା ବସି ଖାଉଥିବେ ସଡ଼୍ ସଡ଼୍ ସଡ଼୍ ସଡ଼୍ । ୪ । କହେ ଗଦାଧର ଦେବୁକର । ଯୋଗ ନାଥ ସଙ୍ଗତେ ବହର । ଯେବେ ଏ ସଂସାରୁ ତରିଯିବୁ ମନ ! କୃଷ୍ଣ ପଦ୍ମପାଦେ ପଡ଼୍ ପଡ଼୍ ପଡ଼୍ ପଡ଼୍ । ୫ ।

( ୭୧ )

ରାଗ—ଯତ୍ ।

ବାଇମନ ହୋ ! ରହି ହଂସକୁ ଖେଳ ।
ହଂସ ଉଡ଼ିଗଲେ ବୁଡ଼ିବ ଭେଳା । ଘୋ ।

ପୋଖରୀ ଗୋଟିକ ସ୍ମର ଚୌରସ ତହିଁ ଉଡ଼ିଗଲା ଅଣ୍ଡିରା ହଂସ । ୧ । ଶୁଖିଲା ପୋଖରୀ ମଝିରେ କାଦଅ । ତହିଁ ଅଛି ତୁଆ ଗଲ୍ପି ଉଡ଼ । ୨ । ତହିଁ ଗୋଟିକେ ତନ ତନ ତୁଆ । ସୃଜନୀ ହୋଇଲେ କହିବ ଏହା । ୩ । ସର୍ପକୁ ମଣ୍ଡୁକ ଲଖୁଛି ରେଳ । ସ୍ୱଭରୁଷେ ଅଛି

ମନ୍ଦାରଫୁଲ । ୪ । ଏକ ଦେହଲରେ ଦଶ କବାଟ । କେଉଁଠାରେ ଅଛୁ କଲପ ବଟ । ୫ । ଗୀତ ପାଞ୍ଚପଦ ଅର୍ଥ ବହୁତ । ଭାବରେ ଭଣିଲେ ଦୀନ ଅଚ୍ୟୁତ । ୬ ।



( ୬୨ )

ରାଗ ଖେମଟା ।

ଭୁଲ୍ମନ ! ଭୁଲୁ କାହିଁକି ?
ମରିଯିବୁ ବୋଲି ଜାଣୁ ନାହିଁ କି ?

ପିଣ୍ଡ ଯେତେବେଳେ ପ୍ରାଣ ଛାଡ଼ିଯିବ ଘେନିଯିବେ ତୋତେ ମଡ଼ାଭୂଇଁକି । ପଦ । ମାତା ଗର୍ଭେ ଥିଲୁ ରୁନ୍ଧ ହେତେବେଳେ ସତ୍ୟ କରିଥିଲୁ ଯାହା ପାଇଁକି । ଶୂନ୍ୟପୁରୁ ଆସି ନରଲୋକେ ମିଶି ସତ୍ୟ ଶାନ୍ତ୍ର ଦୟା ମନେ ନାହିଁକି । ୧ । ନାମକୁ ହେଳନ ରୁ ନିକଟ୍ଟୁ ବାଜ ସେ ନାମ ଧାରଣାରେ କନ୍ଧକୁ ଡ଼ାକି । ମିଳିଣ ହନୁର ନେବେ ତତପର ତୋ' ଗଳାରେ ଦେଇ ଘଣ୍ଟାଟିକି । ୨ । ନାନା ତୀର୍ଥବ୍ରତ କରୁଅଛ ମନ ସଂସାର ଲୋକଙ୍କର ଦେଖାଦେଖି । ବଡ଼ ଚିତା ଚଢ଼ ଥାଳ ମାଳ ସବୁ ହେବ ନାନ୍ତରେ ଠକାଠକି । ୩ । ପଡ଼ି ଏ ଭବରେ ଦବଗ ବାଦରେ ବାନ୍ଧିକି ଦେହକୁ ରୁ ଝଙ୍କା-ଝିଙ୍କି । ଛାଡ଼ିବ ଅଟାଳି ଭାଙ୍ଗିଯିବ ନାବ ଧାମ ବୃନ୍ଦାବନ କହେ ଚରଣ । ୪ ।



( ୬୩ )

ରାଗ—ଖେମଟା ।

ବନ୍ଧୁ, ମୋର ବନ୍ଧୁକୁ ଯାଇଁ;
କାହିଁ କଇଁ ଫୁଲ ଦେଇବ ଅଣାଇଁ । ପଦ ।

ପଞ୍ଚାଶ ମୂଲ୍ୟଣ ଖଇରେ ଘେନିଣ ବନ୍ଧୁ ବନ୍ଧାଇଲି ବହୁଲ

ଦେଇ । ଅଣଗୁଣ ବନ୍ଧ ବାନ୍ଧିଲ୍ ବେଲକୁ ଶୂନ୍ୟରେ ଲହଡ଼ି ମାଇଲ ନେଇ ॥ ପଚଶ ମୂଲ ଆ ତହିଁ ଜଗୁଆଳି ଗୁରୁ ଦବା ନନ୍ଦା ମାଡ଼ଇ ନାହିଁ । କାଳନ୍ଦୀ ହ୍ରଦ ଯେ ଉଜାଣି ଟେକଛୁ ପଡ଼ିଆ ହଠିଆ ବାରଣ ନାହିଁ ॥ ବାସ୍ତବ୍ୟ ହାତ ଯେ ଜଳରୁ ଗମ୍ଭୀର କାଳନ୍ଦୀ ହ୍ରଦରେ ଫୁଟିଛୁ କଇଁ । ଶଏ ଷାଠିଏ ପାଖୁଡ଼ା ଲଗିଅଛୁ ନାଗୁଣୀ ତହିଁରେ ଖେଳ ଖେଳଇ ॥ କଇଁ ଫୁଲଠାରେ ଏମନ୍ତ ପୀରତ ଦେଖିଲେ ମୋ ମନ ଗ୍ରୁଡ଼ଇ ନାହିଁ । ବସ୍ତ୍ର ଭଗବାନ ମାଗୁଛୁ ଶରଣ ଆଉ ଅନ୍ୟ ଫୁଲେ କାରଣ ନାହିଁ । ୪ ।

---

( ୬୪ )

ରାଗ — ଖେମଟା ।

ମୋହମାୟା ଛନ୍ଦେ ପଡ଼ି ନୁହଁରେ ବଣା ।
ଶ୍ରୀହଟ୍ଟ ପାଟଣା ପରେ କର ଭାବନା । ଘୋଷା ।

ତହିଁ ନଦୀ ଶତଧାର, ନାମ ହୋଇଛୁ ଚେଉର, ତହିଁ ମଧ୍ୟେ ହଂସ ପକ୍ଷୀ କରଛୁ ଠଣା । ୧ । ସେ ନଦୀରେ ତ୍ରିପଦଶ୍ରୀ, ତହିଁ ଅମାନକା ତରୀ । ସେ ତରୀର ଉପ୍ରେ ହଂସ ଶୂନ୍ୟେ ଗମନା । ୨ । ସତ୍ତ୍ୱ ରଜ ତମ ଗୁଣ, ଯେଣ ଏ କାୟା ଘଟନ । ଅନାହତ ଧ୍ୱନି ଜାଣ ଭର ଚେତନା । ୩ । କହେ ଅରକ୍ଷିତ ଦାସ, ଅନନ୍ତ ଗୁମ୍ଫାରେ ବାସ । ତହିଁ ବସି କର ନାମବ୍ରହ୍ମ ଭଜନା । ୪ ।

---

( ୬୫ )

ତାଳ—ଆଠତାଳି ।

କହୁଛୁ ଅବନା ବାଇ । ଦବାନଶି ଏକ ହୋଇ । କେ ପାଇବ ଆଦ୍ୟ ଅନ୍ତ ଚହ୍ନ ରଖିଅଛୁ କାହିଁ । ଘୋଷା । କାମନା କଲ୍ପନା

ଦ୍ୱାରେ, ନ ମିଶେ ହେଜ ପାଞ୍ଚରେ । ତାକୁ କେ କରିବ ଠାବ ଯାର ନାହିଁ ଦ୍ୱାର ଗୁର । ୧ । ନ ମିଶେ ଶବ୍ଦ ଆକାରେ । ଏକୋଇଶ ସ୍ୱର ବାହେ । ସାଶ ବ୍ରହ୍ମ ଏକପଦ ରହିଥିବ ଗୁପ୍ତ ହୋଇ । ୨ । ଛୁଟ ବସ୍ତିରେ ନ ଥିଲା, କେଉଁ ଭିତରେ ରହିଲା । ତାଙ୍କୁ ଯେ ଭେଟାଇ ଦେବ ତା ପାଦ ଧରିବ ଯାଇଁ । ୩ । ନ ଘେନେ ମେବା ଭକତ, ପ୍ରଚ୍ଛନ୍ନ ଭଜନ ନାସ୍ତି । କହିବ ଖ୍ରୀମ ଅଚ୍ଛିଷ୍ଟ ଅନ ମେ ହେଲାକ୍ଷ ଯଇଁ । ୪ ।

—— —— ——

( ୬୭ )

ତାଳ—ଯତି ।

ପ୍ରିୟ ସଜନ ଗୋ ! ଯଦା ମୁଁ ଦେଖିଲି ଆଜ ।

କହିଲା ଲୋକର ମନକୁ ନ ଆସେ ଶୁଣିଲା ଲୋକଙ୍କୁ ଲାଜ । ପଦ । ପୁତ୍ର ହୋଇଣ ଅଣ୍ଡ ତାର ନାହିଁ ପ୍ରଶ୍ନ ହୋଇ ନାହିଁ ଯୋନ । ଅନ୍ଧ ଦରଷଲେ ସଦାସ ନଚନ୍ଦ୍ର ନାହିଁ ଦିବସ ରଜନୀ । ୧ । ଅଣ୍ଡ ହରଷରେ ସନ୍ଦାସ ଅନ୍ତରେ ଅନିବାର୍ଯ୍ୟ ଯଦି ନାହିଁ । କହୁଥିଲ ପରେ ସୁଦ ଜନ୍ମ ହେଲ କାନ୍ଦେ କୁଆଁ କୁଆଁ ହୋଇ । ୨ । ସ୍ତନ ନାହିଁ ପୁଣ କ୍ଷୀର ଖାଉଅଛୁ ସେମ ଗ୍ରସେ ନାହିଁ ମୁଖ । କେଉଁଠାରେ ରହୁ ହାତ ବସାଇଛୁ ନାହିଁଲେ ହୋଇଛୁ ଗୋପ୍ୟ । ୩ । ନେତ୍ର ନାହିଁ ତ୍ରିଭୁବନ ଦେଖଅଛୁ ଜିହ୍ୱା ନାହିଁ ସ୍ୱାଦୁ ମଣେ । ନାସା ନାହିଁ ସବୁ ବାସନା ଘେନୁଛୁ କର୍ଣ୍ଣ ନାହିଁ ସବୁ ଶୁଣେ । ୪ । ସୁଜନ-ମାନଙ୍କ ଚରଣ ସେବାଣ ମନ ପଗ୍ଭୁରୁଛୁ ମୁହିଁ । ଗୀତ ଗୃଶପଦ ଅର୍ଥ କରିଦେବ ଭଣେ ଗୋବରଦ୍ଧନ ଗୋସାଇଁ । ୫ ।

( ୭୭ )

ତାଳ—ପଦ୍ମପଟ୍ଟା

ଦୀନବାନ୍ଧବ ହେ ! କେ କି ଦେଲା ମୁଁ ନ ଦେଲି । ଟେକିଅଛ ଭର ଡ଼ାକିଲାକ ପ୍ରାୟେ ଠକିଦେଲି ମୁଁ କି କଲି । ଘୋଷା । ତାରିଛ କରିକି·ମାରି ତା ଅରିକି ସ୍ମରି ସେ ହେବାରୁ ଧାରି । ତରି ମରୁ-ଥିଲା ହରି ଯେନଗଲା ତରିଗଲା ହରି ବୋଲି । ୧ । ବାଜାବଜା ରଜା ଅଜାମିଳ ପାପୀ ସଜାରୁ ହୋଇଲା ଖାଲି । ଗଣ୍ଡାଇ ଭୁଣ୍ଡାଇ ଗଣ୍ଡାଇ ମାରୁଛ କେଉଁ ଅପରାଧ କଲି । ୨ । ଅନ୍ଧ ବିପ୍ରଙ୍କୁ ଚକ୍ଷୁଦାନ ଦେଲ ତା ପୁଅ ସଙ୍ଗେ ଖେଳି ବାଳି । ଅଧମ ଦାସଙ୍କୁ ଝୁଣ୍ଟି ଗଲ ନାହିଁ ବଧ ହେଲି ରୁଳି ରୁଳି । ୩ । ପିଲାଟି ବନରୁ ଡକା ପକାଉଛି ଫିକା ହୁଅନ୍ତାଣି ନାଲି । ବାଙ୍କା ବୋଲେ ଚକାନେଣ୍ଡ ନ ଜାଣଇ ଏବେ ଡକାଇତ ବୋଲି । ୪ ।

———

( ୭୮ )

ଆହେ ନୀଳ ଶଇଳ ପ୍ରବଳ ମତ୍ତ ବାରଣ । ମୋ ଆରତ ନଳିନୀ ବନକୁ କର ଦଳନ । ୧ । ଗଜରାଜ ଚିନ୍ତା କଲା ଥାଇ ଘୋର ଜଳେଣ । ଚକ୍ର ପେଷି ଗ୍ରାହ ନାଶି ଉଦ୍ଧାରିଲ ଆପଣ । ୨ । ଘୋର ବନେ ମୃଗୁଣୀକି ପଡ଼ିଥିଲା କଷଣ । ତେଡ଼େ ବଡ଼ ବିପତ୍ତିରୁ କରିଅଛ ତାରଣ । ୩ । କୁରୁସଭାତଳେ ଦୁଃଶୀ ଦ୍ରୌପଦୀର ଜଣାଣ । କୋଟି ବସ୍ତ୍ର ଦେଲ ହେଲେ ଲଜ୍ଜା ନିଳ ବାରଣ । ୪ । ରାବଣର ଭାଇ ବିଭୀଷଣ ଗଲା ଶରଣ । ଶରଣ ସମ୍ଭାଳି ତାଙ୍କୁ ଲଙ୍କେ କଲ ରାଜନ । ୫ । ପ୍ରହ୍ଲାଦ ପିତା ସେ ଯେ ବଡ଼ ଦୁଷ୍ଟ ଦାରୁଣ । ସ୍ତମ୍ଭରୁ ବାହାରି ତାକୁ ବିଦାରିଲ ତକ୍ଷଣ । ୬ । ନୀଳାଚଳେ ବିଜେକଲ ବୌଦ୍ଧ ଅବତାରେଣ । ବେଣୁଭୁଜ ଟେକି ପ୍ରଭୁ ଯାଚୁଅଛ ଶରଣ । ୭ ।

କହେ ସାଲବେଗ ହୀନ ଜାତରେ ମୁଁ ଯବନ । ଶ୍ରୀରଙ୍ଗାଚରଣ ତଳେ କରୁଅଛୁ ଜଣାଣ । ୮ ।

---

( ୬୯ )

ତାଳ—ଏକତାଳି, ଅଡ଼ଖେମଟା ।

ଅଭୟ ପାଦପଦ୍ମକୁ କର ରୁ ଆଶା ।
ଚର ନୁହେ ଏ ଶରୀର ଅଛୁ କି ଦଶା । ପଦ ।
ଆକାରରୁ କର ଠାବ, ଇକାରେ ଲଗାଅ ଭାବ ।
ଉକାରଟି ସବ ଶୁଭ ଏ ତନ ମିଶା । ୧ ।
ଏଥୁ ଶୂନ୍ୟ ପରେ ଶୂନ୍ୟ, ତଥିପରେ ନିରଞ୍ଜନ
ନାହିଁ ଯହିଁ ବାଇ ଘୁଇ ଦିବସ ନିଶା । ୨ ।
ପଞ୍ଚମାତ୍ରା ପଞ୍ଚସ୍ଥାନ, ପଞ୍ଚସ୍ୱରେ କର ଜ୍ଞାନ
ପଞ୍ଚାଶ ଦଳ ଭେଦଣ ଖେଳାଅ ହଂସା । ୩ ।
ନାମକୁ କର ଭଜନ, ଅନାମେ ପଶ ଶରଣ
କହେ ଦାସ ରଘୁନାଥ ଶୂନ୍ୟ ଭରସା । ୪ ।

---

( ୭୦ )

ତାଳ—ପୋସ୍ତା ।

ବାଛୁ କେ ନାମ ଦେଲା ଦଇତ୍ୟାରି ଦୟାନିଧି । ଦଇତ୍ୟାରି ଦୟାନିଧି ଦୟାଳୁ ସମଦରଶ । ନନ୍ଦସୁ କମା ହେଲ ନିରବଧି । ପଦ । ଭଜଣ ସେ ପାଦାମ୍ବୁଜ । ହେଲେ ଉଶଗଲା ଗଜ । କାହୁଁ ଛୁଟିଲା ତାର ବଳ ବୁଦ୍ଧି । ୧ । ଚନ୍ତିଲ ପ୍ରହ୍ଲାଦ, ଭକ୍ତ ପାଇ ବିଷାଦ । ସ୍ତମ୍ଭୁ ବାହାରି ତା ପିତାକୁ ବଧି । ୨ । ଗୋପେ ରଖି ଗୋକୁଳ । ଗିଳିଲ ଯେ ଦାବାନଳ । କଲ ଗୋପୀଙ୍କର କାମନା

ସିଦ୍ଧି । ୩ । କହେ ସାଲବେଗ ହୀନ । ଏହି ମୋର ନିବେଦନ । ସେ ପାଦେ ଚିତ୍ତ ରହୁ ନିରବଧି । ୪ ।

———

( ୭୧ )

ତାଳ—ଯୋଷା ।

✓ ବିଶ୍ୱପତି ! ମୋ ବିନତି ଘେନି ପଦେ ଦିଅ ସ୍ଥାନ ।

ନ ପାରଇ ସହି ଆଉ ସଂସାର ଯାତନା ମାନ । ଘୋଷା ।

ଆହେ ପ୍ରଭୁ ଅନ୍ତର୍ଯାମି । ଅଖଣ୍ଡ ବ୍ରହ୍ମାଣ୍ଡସ୍ୱାମୀ । ତୁମ୍ଭଙ୍କୁ କି ଜଣାଇବ କେଉଁ କଥା ବା ନ ଜାଣ । ୧ । ମୋହମାୟାରେ ବୁଡ଼ିଲି । ସଂସାର ସୁଖେ ଭୁଲିଲି । ଚିନ୍ତା ସର୍ପରେ ବୁଡ଼ିଲି, ଅନୁକ୍ଷଣେ କାନ୍ଦେ ପ୍ରାଣ ॥ ଆହେ ଦେବ ସର୍ବସାକ୍ଷୀ । ଭକ୍ତିଭାବ ନ ଜାଣଇ ଏ ଉଦରୁ କର ରକ୍ଷା ଡାକେ ଭାଗୀରଥି ଦୀନ । ୩ ।

———

( ୭୨ )

ତାଳ – ଝୁଲା ।

✓ ରତ୍ନସିଂହାସନ ମଣ୍ଡି ମାଣିକ ଜହ୍ନିବୃଟି କଥାଏ ।

ମହୋଦଧି କୂଳେ । କଳ୍ପବଟମୂଳେ କରିଅଛନ୍ତି ବିଜୟେ । ପଦ । ସେ ଚନ୍ଦ୍ର ବଦନ ପଙ୍କଜ ଲୋଚନ ଆଉ କମ୍ପା ଏଡ଼େ ଭୟେ । ଭାତ ନ ମିଳଇ ଲୁଣ ନ ମିଳଇ ଲୁଣ ବିନା ବଡ଼ ଭୟେ । ୧ । ଅଧିକ ଭିତରେ ଟଙ୍କା ଗୁପ୍ତ ଅଛି ସଂସାର ଅନ୍ଧାରମୟେ । ମୋହ ପାଇଁ କିଛି ଧନ ମାଗୁଅଛି ନ ଶୁଣ ଦେବାଧି ସ୍ୱୟେ । ୨ । କପଟ ଦ୍ରୌପଦୀ ଲଜ୍ଜାକୁ ରଖିଲ ଏବେ କି ପାସୋର ଯାଏ । ତୁମ୍ଭଙ୍କୁ ତୁମ୍ଭ ଭକ୍ତଗଣ ଅଟଇ ସେବେ କୋଳ ବଟି ନ୍ୟାୟେ । ୩ । ଛିଣ୍ଡିଆ ଗ୍ରାମରେ ରହି ଦୀନ ହାଡ଼ି ଜଣାଉଛି ପଦ୍ମପାଏ । ମୋହ କର୍ମକୁ ଯେ ବଧିର ହେଲ କି ନ ଶୁଣ ହେ ଦୟାମୟେ । ୪ ।

———

( ୭୩ )

ତାଳ—ଏକତାଲି ।

ଆରେ ଭଜ ମନ !

ଭଜ ମାଂଶଲେ ପାଇବୁ ଦରଶନ । ଘୋଷା ।

ଚତା ସଲଙ୍ଗରେ ଧୂନଘର । ଧବଳ ଚତାକୁ ଲକ୍ଷ୍ୟ କର । ଧାଉଅଛୁ ମାବ ଚରମ ସଙ୍ଗରେ ଧପା ଦେଉଅଛୁ ନିରନ୍ତର । ୧ । ତ୍ରିବେଣୀ ବହୁଛୁ ଉଜନଧାର । ବହନ୍ତା ନଦୀକୁ ଅସ୍ତ କର । ବଙ୍କନାଳେ ପାଣି ଉଠିବ ଉଜାଣି, ଘୁଞ୍ଚିଯିବ ଘୋର ସଂସାଘର । ୨ । ତ୍ରିବେଣୀ ନଦୀ ପଶ୍ଚିମେ ଯାଇଁ, ତ୍ରିକୂଟ ହାଟରେ ଅଛୁ ଅନ୍ଧ । ସେହି ଅନ୍ଧବର ଶବଦ ଘାଟରେ ପଶି ନ ପାରନ୍ତି ଚନ୍ଦ୍ର ବେନ୍ଦ୍ର । ୩ । ଦେଉଳ ଭିତରେ ଦେଖ ଠୂଳ । ଦେବତା ଅଛନ୍ତି ହୁଲ ହୁଲ । ଦେଉଳେ ପଶିଲେ ଦର୍ଶନ ପାଇବୁ ମୋକ୍ଷ ହୋଇଯିବ ପିଣ୍ଡ ତୋ'ର । ୪ । କହଇ ଅଚ୍ୟୁତ ବ୍ରହ୍ମଜ୍ଞାନ । କୃଷ୍ଣ ପାଦପଦ୍ମେ ଦେଇ ମନ । ସଦା କରୁଅଛି ଏହି ନିବେଦନ କୃପାକର ମୋତେ ସାଧୁଜନ । ୫ ।

———

( ୭୪ )

ତାଳ—ଅଠତାଳ ।

ଜନ ଅନାଥଙ୍କୁ, ଶ୍ରୀଜଗନ୍ନାଥଙ୍କୁ, ଧ୍ୟାନ କର ରେ ମନ ! ଶ୍ୱେତପଦ ନେତ୍ରଙ୍କୁ । ପଦ । ଧନ୍ୟ ସେ ନୀଳାଦ୍ରି ଡୋଳା, ଭବସାଗରକୁ ଭେଲା, ହୃଦେ ଯନ୍ତ୍ର ଅସ୍ତକଳା, ଧ୍ୟାନେ ସଦାଶିବ ଭୋଳା, ମନକୁ ଗଲା ହୋ', ସେ ନେତ୍ରେ ମିଳା ହୋ, ହେଳା କଲେ ପାଇବୁ ରୁ ଦଣ୍ଡଧର ଘାତକୁ ॥ ଧନ୍ୟ ସେ ଭ୍ରୂରୁ ଭ୍ରୂଲତା, ସୁଧାସିନ୍ଧୁ କଳ୍ପଲତା, ଦୃଷ୍ଟିଣ ସେ ଉର୍ଦ୍ଧ୍ୱରେଖା, ଧ୍ୟାନେ କରୁଛନ୍ତି ଚନ୍ଦ୍ରା, ଚନ୍ଦନଚର୍ଚ୍ଚିତା ହୋ, କେଡ଼େ ଶୋଭିତା ହୋ, କବା ସବିତା ଉଦେ ହୋଇଛୁ ଜଗତକୁ । ୨ । ଫୁଟିଛୁ ଶ୍ୱେତକମଳ, ସର୍ବଦା ଭାଲେ ଉଜ୍ଜ୍ୱଳ, ବାସନାରେ ହୋଇ ଭୋଳ, ଚୁମ୍ବନ୍ତି ଭକ୍ତ ବତ୍ସଳ । ପାଇ ଶୀତଳ

ହୋ, ନ ଛୁଡ଼େ କୋଳ ହୋ- ଅମୃତପାନେ ସର୍ବଦା ବଳାଉଛୁ ତାହାକୁ । ୩ । ସୁଗନ୍ଧ କୁସୁମ ମାଳେ, କାଞ୍ଚନ ଅଳଙ୍କାର ଗଳେ, ଇନ୍ଦ୍ରଧନୁ ଦର୍ପ ଦଳେ, ମୟୂରଚନ୍ଦ୍ରକା ଚୂଳେ । କେବେହେଁ ଘୁଞ୍ଚିଲେ ହୋ, ବାମକୁ ଢଳେ ହୋ, ସେ ପାଦପଦ୍ମରେ ବୃନ୍ଦାବନ ରଙ୍ଗେ ଚାହାଁକୁ । ୪ ।

---

( ୨୫ )

ମରୁଆଫୁଲ ଚଉତିଶା ।

କହୁଅଛି ମନ ଶୁଣ । ଷୀନ୍ନନ:ଲେ ପଣି କର ଦର୍ଶନ ଲେ । ମରୁଆ ଫୁଲ ! ଗୁପତେ ଗଙ୍ଗା ସ୍ନାହାନ ଲେ । ୧ । ଘଟର ନୃତ୍ୟଭି ତର । ଉଦେ ଥାଉଁ ଥାଉଁ ନାମକୁ ଧର ଲେ । ମରୁଆ ଫୁଲ । ଚକ୍ରଧରଙ୍କୁ ସୁମର ଲେ । ୧ । ଗୁଡ଼ଲେ ଆସିବ ନାହିଁ । ଜୀବକୁ ଯେତନ ପରମ ତଲଇ ଲେ । ମରୁଆ ଫୁଲ । ଝୁଡ଼ି ପଞ୍ଚବ ତୋ ଦେହି ଲେ । ୩ । ନଗଞ୍ଜନ ନର୍ବିନ୍ଦେଣି । ଟେବ ବାହାରେ କ ଦେବତା ରହି ଲେ । ମରୁଆ ଫୁଲ । ଠକ ଦ୍ୱାରକା ଜହଇ ଲେ । ଢ଼ମ୍ପୁଫୁଟି ଛୁଆ ଗଲ । ଢାଙ୍କିଣି ଏକାନ୍ତେ ପଡ଼ି ରହିଲ ଲେ । ମରୁଆ ଫୁଲ । ଅଣାକାରରେ ମିଶିଲ ଲେ । ୫ । ତେତର ଗିର ଶିଖେ ରହି । ଥେଣ୍ଟ ଘାଟଣା ତ ରହିବ ନାହିଁ ଲେ । ମରୁଆ-ଫୁଲ । ଦହିବେ ଅନଳେ ନେଇ ଲେ । ୬ । ଧ୍ୱନିରୁ ଧ୍ୱନ ହୋଇଲ । ନାଶବଦ ଘଟୁ ଶବଦ ହେଲ ଲେ । ମରୁଆ ଫୁଲ । ପଶ୍ଚିମେ ଯାଇ ନଇଲ ଲେ । ୭ । ଫୁଙ୍କା ବନ୍ଧ ପରେ ରହି । ବନା ବାରମାସ ରହିବ ନାହିଁ ଲେ ମରୁଆ ଫୁଲ । ଭଣ୍ତ ଦ୍ୱାରକା ଜହଇ ଲେ । ମନ୍ତ ମନ୍ତ ବୋଲୁଅଛୁ । ଜଗତକୁ ମନ୍ତ ଜୀବ ଯାଇଛୁ ଲେ । ମରୁଆ ଫୁଲ । ତୁମେ ତାର ନ ଚଳୁଛୁ ଲେ । ୯ । ଲୋଭ ମୋହ ମାୟା ମନ୍ତ । ବିହନ୍ତା ପୁରୁଷ ଶୂନ୍ୟେ ରହିଲ ଲେ ॥

ମଲ୍ଲୁଆ ଫୁଲ । ଶୂନ୍ୟରେ ଶୂନ୍ୟ ମିଶିଲା ଲୋ । ୧୦ । ଶୂନ୍ୟେ ଶୂନ୍ୟେ
କର ବାସ । ଶୂନ୍ୟରେ ବଜାଅ ଶୂନ୍ୟପୁରୁଷ ଲୋ । ମଲ୍ଲୁଆଫୁଲ ।
ଶୂନ୍ୟରେ ଅବନା ହଂସ ଲୋ । ୧୧ । ଛ ଛନ୍ଦେ ଛନ୍ଦା ଅକ୍ଷର ।
ଛନ୍ଦ ଚଉଦଶା କଲେ ପ୍ରଚୁର ଲୋ । ମଲ୍ଲୁଆ ଫୁଲ । ସ୍ମର ଦ୍ୱାରିକା
ପାମର ଲୋ । ୧୨ ।

---

( ୭୭ )

ଲାଗିଅଛି ବ୍ରହ୍ମ ଆଜ୍ଞା ଅଲେଖ କୁଣ୍ଡେ ।
ଧାପ ଦେଉଅଛି ଏକୋଇଶ ବ୍ରହ୍ମାଣ୍ଡେ । ଘୋଷା ।

ବ୍ରହ୍ମ ବେଦାନ୍ତଗ କଲ, ଅଧେ ବ୍ରହ୍ମାଣ୍ଡ ରଚିଲ । ଗୁପତ
ହୋଇ ରହିଛି ଅନ୍ତର ଖଣ୍ଡେ । ୧ । ଏକ ବ୍ରହ୍ମରୂପ ଗୋଟି, ବ୍ରହ୍ମା
ବିଷ୍ଣୁ ଶିବ ସୃଷ୍ଟି । ଯାହା ମୁଁ ଦେଖିଛି କାସ କାହିବ କୁଣ୍ଡେ । ୨ ।
କାଷ୍ଟର ପାଉଁଶ ନାହିଁ, ଧୂମ ଧୂଆଁ ନ ଦିଶଇ । ଗୁଡ଼ ଘୃତ ନାହିଁ
ହୁତାଶନ ପଚଣ୍ଡେ । ୩ । ଦସ୍ତ ମାନ ଦେବ କହି, ଲଲାଟପଟେକୁ ଚାହିଁ,
ଲେଖା ହୋଇଅଛି ଯାହା ଦେଖ ସେ ମୁଣ୍ଡେ ॥ ସ୍ୱୟଂ ବ୍ରହ୍ମ ଏକରୂପ,
ସକଳ ଜୀବଙ୍କ ବାପ, ଅସ୍ଥାନ ସ୍ଥଳରେ ସେବା ଭକତ ଛୁଟେ । ୪ ।
ବସିଅଛନ୍ତି ଅନାଦି, ଶୂନ୍ୟ ଆସନ ସମାଧି । ଅଣ ଶବଦ ପ୍ରକାଶ
ଅମର ଦାଣ୍ଡେ । ୬ । ଦଜ୍ଜ ଯାଉଅଛି ପିନା, ଉଦେ କରସ୍ଥ
ବାସନା । ଯେବଣ ସୁକୃତ ଅଛି ଭଗମେନାଣ୍ଡେ ॥ ନଗମପଥ ଆଦର,
ଅଧ୍ୟୟନରେ ସୁମର । ଯତ୍ନବନ୍ଧେ ଧର ଜୀବ ଆଉ ଏ ଦଣ୍ଡେ । ୮ ।
ଯେଉଁ ଜନ ଭକ୍ତ ତାର, ସେହୁ ଜାଣେ ବ୍ରହ୍ମସାର । ଶ୍ରୀପାଦ
ତଳରେ ଶିର କମଳ ଲୁଣ୍ଡେ । ୯ । ଅକ୍ଷୟ ବ୍ରହ୍ମରେ ମିଶି,
ଏକରୂପ ପ୍ରାପ୍ତ ହସି, ତାକୁ କେହି ସର ନୋହେ ଉଦନ ବ୍ରହ୍ମାଣ୍ଡେ ॥

ପିନ୍ଧନ୍ତି ବୃକ୍ଷ ବକଳ, ନେଣେ ଦେଖନ୍ତି ସକଳ, ଅତଏବ ପ୍ରାପ୍ତ ହୁଅନ୍ତି ଧରମଦାଣ୍ଡେ । ୧୦ ।

( ୨୨ )

ତାଳ—ଅଡ଼ଖେମଟା ।

ଜଗବନ୍ଧୁ ପଦ ଜଣେ ସାମନ୍ତ, ନାହିଁ ନାହିଁ ତ ।
ଚଉଦ ଭୁବନ ବାଳକା ନ ଶନ୍ତି ଚନ୍ଦରେ ନେଦନ୍ତି ଅରନ୍ତ । ପଦ ।
ଯେତେବେଳେ କୃଷ୍ଣ କଂସ ପଦ୍ମରେ ଥିଲେ ଅକ୍ରୁର ଆଣିଣ ଗଲା ତ ।
ଗାଈ ଦୁହଁ ଦୁହଁ କେଶ ଫିଟିଗଲା ଚତୁର୍ଭୁଜ ହେଲେ ଅନନ୍ତ । ୧ ।
ସୁଗ୍ରୀବର ସଙ୍ଗେ ମଇତ୍ର ହୋଇଣ ବାଳିକି ବିନାଶ କଲେ ତ ।
ରାବଣେ ଭ୍ରାତା ଯେ ଶରଣ ପଶିଲା ଲଙ୍କାଗଡ଼ ତାକୁ ଦେଲେ ତ । ୨ ।
କୁରୁ ସଭାତଳେ ଦ୍ରୌପଦୀ ଡାକିଲା କୋଟିବସ୍ତ୍ର ବଢ଼ାଇଲେ ତ ।
ଭାରତ ଯୁଦ୍ଧରେ ଭରଦ୍ୱାଜ ପକ୍ଷୀ ଘଣ୍ଟା ଘୋଡ଼ାଇ ରଖିଲେ ତ । ।
ଏମନ୍ତ ସାମନ୍ତ ହିଣ୍ଡୁଛନ୍ତି ନାହିଁ କାହାନେ ଆରତ ଭରତ ।
କହେ ଦୀନକୃଷ୍ଣ ଦାସ ସେ ଶ୍ରୀକୃଷ୍ଣ ପଦ୍ମପାଦେ ଚିତ୍ତ ଧ୍ୟାୟୁତ । ୪ ।

---

( ୨୮ )

ତାଳ—ଖେମଟା ।

ବଂଶୀ ଦେଖିଥିବା କେଗୋ ସଖି !
ଦେଉଳରେ ବଂଶୀ ଦେଖା ନାହିଁ । ପଦ ।

ବଂଶୀ ଦେଖିବାକୁ ମନରେ ଶରଧା ଦେଉଳ ଭିତରେ ପଶିଲି ଚାହିଁ । ୧ । ପ୍ରଥମେ ବାଟ ବଂଶୀଙ୍କ ନିକଟ ଯୋଗମାୟା ପାଖ ଉପରେ ଯହିଁ । ୨ । ବଣୀବଟ ତଟ ବଂଶୀକୃଷ୍ଣ ମଠ ଦ୍ୱାଦଶ ଯୋଜନ ରାହାସ ଯହିଁ । ୩ । ଅଷ୍ଟବଳା ନାଗ ଦେଖଣ ଛନ୍ଦାଙ୍କ

କନକ ଶଯ୍ୟନ ଉପରେ ଯାଇଁ । ୪ । ସିଦ୍ଧ ବଟ ବଟ ପୃଷ୍ଠରେ ବଜାୟେ ରାଧାକୃଷ୍ଣ ଦେହି ବାରଣ ନାହିଁ । ୫ । ଯାଉଁକ ଭବାଟ ଚପିଅଛ ହୁଟ ରୋହିଣୀକୁଣ୍ଡ ପାରୁଣରେ ରହ । ୬ । କହଇ ସାଧୁଆ ଗୁରୁ ଅଜ୍ଞା ଥିଲେ କମଳ ପୃଷ୍ଠରେ କଲାକଲ୍ୟାଣ । ୭ ।

---

( ୭୯ )

ତାଳ ଏକତାଲି, ଆଡ଼ଖେମଟା ।

ଭଜ ମନ ! ଏକାକ୍ଷର ଶୂନ୍ୟ ଭଜନ ।

ମହାଶୂନ୍ୟ ଠୁଲବ୍ରହ୍ମେ ଲଗାଅ ଧ୍ୟାନ । ପଦ ।

ବ୍ରହ୍ମାଦି ତେତିଶ ଦେବ, ନ ପାନ୍ତି ତହିଁର ଭାବ, ଜାଣି ତାହା ସଦାଶିବ ଭଇନ୍ତ ପାନ । ' । ଓଲଟ ସମୀର ଟେକ, ଅମନ ମଧ୍ୟରେ ରଖ, ପଞ୍ଚନାଡ଼ୀଚକ୍ର ଯୋଗ ନାଗସ୍ଥାନ । ' । ଝରୁଛି ତ୍ରିବେଣୀ ଝର, ଝରନ୍ତି କେତେ ମଧୁର ଝଟଣିକେ ଚନ୍ଦ୍ର ଧର ଯୋଗ ଜାଗିଣ । ୩ । ସନ୍ଥ ସଧୁ ସଙ୍ଗେ ବସ, ପାଇବ ପଦ୍ମମହିଷ, ଗୀତେ କହେ ରଘୁଦାସ ମୂଢ଼ ଅଜ୍ଞାନ । ୪ ।

---

( ୮୦ )

ତାଳ—ଝପକା ।

ଅରେ ମନ ମୋର !

ମୁଁ ଯେ କହୁଛୁ ସ୍ୱରୂପ ତୋ ଅଗର । ପଦ ।

ଧ୍ୟାନ ସ୍ୱରୂପ ଖେ ଜ୍ୟୋତିଘର । ଧବଳରୂପକୁ ଲକ୍ଷ୍ୟ କର । ଧ୍ୟା ହଅଛୁ ଜୀବ ପରମ ସଙ୍ଗତେ ଧାପ ଦେଉଅଛୁ ନରକର । ୧ । ଦେଉଳ ଦୁଆରେ ଦର୍ପ ଘର, ଦର୍ପ ପୂଜବାକୁ ତତପର । ଦେଉଳେ ପଶିଲେ ଦର୍ପ ତ ଦେଖିବୁ ଦୃଷ୍ଟିରେ ଦେଖିବୁ ନାଗକାର । ୨ ।

ତ୍ରିକୂଟ ତ୍ରିବେଣୀ ଉପନଧାର । ବଦ୍ଧନ୍ନା ନାଶିକ ଲସ୍ପ କର ।
ବଙ୍କନାଳ ପଣି ଟେକନ୍ତେ ଉଜାଣି ଉତ୍ତରିବ ତୋର ହଂସାଘର ।
ଧ୍ୟାସ୍ଥି ଗୁରୁପାଦେ ଆଶ୍ରେ କର । ଫଟିଯିବ ଭବଭସ୍ମ ତୋର ।
ଭଜ ନ ପାରିଲେ ପାମର ଅଚ୍ୟୁତ ଭଗାରି କରୁଛୁ ନାରଖାର ।



( ୮୧ )

ତାଳ—ଯତ୍ ।

ଏଦ୍ଧ ମନ ସିନା ଚତୁର୍ଦ୍ଦଶ ମୃଦଙ୍ଗ ରେ, ମୃଦଙ୍ଗମଣ । ପଦ ।
ମନ କହେ ଚଇତନ । ହେତୁରେ ଦେଖିବୁ ବନ୍ଧ । ଏ ତତ୍ତ୍ୱ ଗୁଣ
ବେଦେଣ । ଦଣ୍ଡିବେ ନହିଁ ଶମନ । ସନକାଦ ମୁନ ଧ୍ୟାଉଛନ୍ତ
ହେ । ୧ । ନ ଖୋଳ ତଡ଼ାଗ କୂପ । ଦେଉଳ ତୋଟା ନ ରୋପ ।
ସ୍ଥାପନା ବର୍ଣ୍ଣ ନ ସ୍ଥାପ । ନ ଯା ବୃନ୍ଦାବନ ଗୋପ । ନ ଯା ଭୃଗୁ
ପ୍ରସ୍ଥ ଗ ଗୋମତୀ ହେ । ଏ ଜ୍ଞାନ ହୁଡ଼ଦ ନ ଧର । ଝଲକ ମାଳା
ନ କର । ଜଟା କୌପୀନ ନ ଧର ଭସ୍ମ ଅଙ୍ଗ ପଶୁଣ୍ଡର ।
ଗଙ୍ଗାକୂଳେ ନାହିଁ ସ୍ୱଦଗଣ ହେ । ୩ । ବ୍ରହ୍ମାଙ୍କୁ ଅମ୍ବରେ ଦେଖ
ଦେଖିଲେ ପାଇବୁ ସୁଖ । ତୋର ଦେହ ଗୃହ ଦେଖ । ଦୀସୁଅଛୁ
ଜକ ଜକ । ଖାବ କହେ ପାମର ଅଚ୍ୟୁତ । ୪ ।



( ୮୨ )

ତାଳ—ଖେମଟା ।

ଫୁଲ ଫୁଟିଛୁ ଜଗତେ ।

ଫୁଲର ବାସନା ଏକା ଜାଣନ୍ତି ଭକତେ । ପଦ ।

ଏକାଷରେ ଫୁଟେ ଫୁଲ ପଞ୍ଚବର୍ଣ୍ଣ ରଙ୍ଗ । ସେ ଫୁଲକୁ ଯେ
ଚନ୍ଧୁଇ ଅଜାମର କହ । ୧ । ସେ ଫୁଲର ନାମ ଅଟେ ଅମର
ଔଷଧ । ସେ ଫୁଲକୁ ଯେଡ୍ଡ ଚଣ୍ଡେ ଲଭଇ ସେ ସିଦ୍ଧି । ୨ । ସେ ଫୁଲ

ଫୁଟିଛୁ ଏକ ବୈଷ୍ଣବ ମଠରେ । ଚଢ଼ିଥିଲ ପାଷୋଣଲ ଜନଙ୍ଗ ଜଠରେ । ୩ । ଶୂନେ୍ୟ ଫୁଟିଛୁ ଫୁଲ ତୋଳି ଯେ ନ ଆସେ । ଅତୀନ୍ଦ୍ରିୟ ସୌରଭ ଫୁଲ ଅଘ୍ରାଣେ ନ ବସେ । ୪ । ସେ ଫୁଲର ଅନ୍ତ ଅନ୍ୟ ନ ଜାଣନ୍ତି କେହୁ । ରାମଦାସ ସାବୁଛନ୍ତି ନୟନ ପୂରାଇ । ୫ ।

---

( ୮୩ )

ତାଳ—ଯତି ।



ମନ ଭ୍ରମର ରେ ! ଏ ଫୁଲରେ ନାହିଁ ବାସ ।
କାହିଁପାଇଁ ଭ୍ରମ ବାଇ ହୋଇଅଛୁ
ଚଢ଼ି ପାଇବୁ କି ଯଶ । ପଦ ।

ଫୁଟି ମଲ୍ଲୀ ଚମ୍ପା ଚନ୍ଦ୍ରଟି ଗଲାଣି ବାସି ହୋଇଲାଣି ବସ । ବାର ବାର ତୋତେ ମନା କରୁଅଛୁ ପାଇବୁଟି ଅପଯଶ । ୧ । ପର୍ବତ ଶିଖରେ ପଦ୍ମ ଫୁଟିଅଛି କେଉଁଟି ଦେଖୁଛୁ ସ୍ପଷ୍ଟ ଯେବେ ତୁ ପାଇବୁ ସେଠାରେ ଯିବୁ ଦୃଷ୍ଟିରେ ହୋଇବୁ ତୋଷ । ୨ । ସେଠାରୁ ତ୍ରିବେଣୀ ବହୁଛି ଉଜାଣି ତହିଁରେ ଖେଳୁଛୁ ହଂସ । ଅମୃତ ଦେଖିଲେ ପଣ୍ଡ ପାନ୍ଥ ଅଛୁ ନାହିଁ ଚଳନ ହରସ । ୩ । ଅଣସୂତ ମାଳା ହାଣଲରେ ଧରି ଭଜ ଅନନ୍ତ ମହେଶ । ମଲା ବୁଝିଗଲେ ଭେଳା ବୁଡ଼ିଯିବ କହଇ ଗୋବିନ୍ଦ ଦାସ । ୪ ।

---

( ୮୪ )

ତାଳ—ଯତି ।

ହଂସ ଖେଳୁଛି ରେ, କଳପ ବଟରେ ରହି ।
ହଂସ ଉଡ଼ିଗଲେ ପିଣ୍ଡ ପଡ଼ିଥିବ
ଡାକିଲେ ଶୁଣିବ ନାହିଁ । ପଦ ।

ବୃକ୍ଷ ମହିମା କି କହିବ ଉପମା ତଳକୁ ହେଲାଣି ମୂଳ । ନବ ପଦ୍ମଶାଖା ପଲ୍ଲବ ହୋଇଛୁ ଉପରେ ହୋଇଛୁ ମୂଳ । ୧ । ଶୂନ୍ୟରୁ ଆସିଛି ତନ୍ତୁ ସପ୍ତରଙ୍କ ନାହିଁ ତାର ନିଜ ସ୍ଥାନ । ଉଲଟ ବୃକ୍ଷରେ ନାବ ଖଟାଇଛୁ ଷଡ଼ରସରେ ଭୋଜନ । ୨ । ଉଲଟ ପବନ ପାଲଟି ବହୁଛୁ ସୂଚୀମୂଳ ପ୍ରାପ୍ତେ ବାଟ । ଜଳେଶ୍ୱରୀ ପାଏ କବାଟ ପଡ଼ିଛୁ ଗ୍ରହେ ମତ୍ତଗଜ ଥାଟ । ୩ । ଶିଶୁପା ଉପରେ ହଂସୁଳୀ ବସିଛୁ ଦୁହିଙ୍କେ ଦୁହେଁ ଅଦୃଶ୍ୟ । ବୋଲେ ପଞ୍ଚୁରାମ ଗୁରୁ ସେବିଥିଲେ ଅବଶ୍ୟ ହୋଇବ ଦୃଶ୍ୟ । ୪ ।

---

( ୮୫ )

ତାଳ—ଝୋଲମଟା ।

ବୋହୂ, ଗୃହ ନ ଜାଣଇ ଗୋ, ପାଦ କରୁଥାଇ ବଙ୍କା । ଯେଉଁଦିନ ବୋହୂ, ସଲଖି ଗୃହର ଘରେ ପଡ଼ିଯିବ ଟଙ୍କା । ପଦ । ଯେଉଁଦିନ ବୋହୂ, ବାପଘରଠାରୁ ଅଇଲା ଶ୍ୱଶୁର ଘରକୁ । ଆପଣା ପତିର ସଙ୍ଗେ ସଙ୍ଗ ନାହିଁ ରସରେ ରସାଏ ପରକୁ । ୧ । ପାଞ୍ଚ ଭଲ ଲୋକ ବୁଝାଇ କହିଲେ ନ ବୁଝିଲା ବୋହୂ, ଛାଲେ । ଅନ୍ନ ପାଣି ବୋହୂ କିଛି ନ ଖାଇଣ ରହିଛୁ ଶୂନ୍ୟ ଆହାରେ । ୨ । ପଚଶ ନଣନ୍ଦ ଜଞ୍ଜାଳ କରନ୍ତି ବୋହୂ ମୋର ବାଲୁଆଳି । ବୋହୂ ଦୁରୁଦଣ୍ଡୀ ସହ ନ ପାରଇ ବୁଲଇ ପଡ଼ଶା ଓଲି । ୩ । ବୋହୂ ଗୋଟିକ ମୁଁ କରି ଆଣିଅଛୁ କାହୁଦା ଘରର ଝିଅ । ବାଞ୍ଛକରକଟୀ ନୁହଇ ଲକ୍ଷ୍ମଟି ବୋହୂ ଆଡ଼େ ରଣପୁଅ । ୪ । ପୁଅ ବୋହୂ ଦୁହେଁ ଏକଜ ହୋଇଲେ ଚତୁର୍ବର୍ଗ ଫଳ ପାଇ । ରଘୁନାଥ ଦାସ ଭରସ କରିଛୁ ବୋହୂକୁ ଭେଟିବା ପାଇଁ । ୫ ।

---

( ୮୭ )

ତାଳ—ଝୁମକା ।

( ଆହେ ଚକାଡ଼ୋଳା ! ଭକ୍ତବତ୍ସଳ ବାଞ୍ଛାରୁ—ବୃତେ )

ବଡ଼ ପୁଣ୍ୟଦିନ,ଦେଖ ରଥପରେ ବିଜେ ଭଗବାନ । ନାନାବାଦ୍ୟ ବାଜୁଅଛି ଜୟ ଧ୍ୱନି, ଝୁଣ୍ଟା ଛତ୍ର ଉଡ଼ୁଛି ଘନ ଘନ । ଘୋଷା । ଦୟାକର ପ୍ରଭୁ ଜଗନ୍ନାଥ; ଚକ୍ରଧାରୀ ମୂରତି ଛନ୍ତି ବନ୍ଧୁ, ଭକତ ଅଭକ୍ତ ଜଗତ ଜନଙ୍କୁ, ଦେବାପାଇଁ ଶୁଭ ଦରଶନ । ୧ । ଏହିଟି ଅଛନ୍ତି ନିରାକାର, ନୟନ ମନର ଅଗୋଚର, ଜନଙ୍କ ହିତରେ ଏହି ମର୍ତ୍ତ୍ୟପୁରେ ଅବତରି ଦିଅନ୍ତି ଶିକ୍ଷା ଦାନ । ୨ । ଯାଙ୍କ ମହିମାର ସୀମାନାହିଁ, ବର୍ଣ୍ଣିବାକୁ କାର ସାଧ୍ୟ ନାହିଁ, ବ୍ରହ୍ମା ଶିବ ଇନ୍ଦ୍ର ସନକାଦି ବୃନ୍ଦ ଜାଣି ନୋହନ୍ତି ଯା ଚରଣ । ୩ । ବଳଦେବ ଅଗ୍ରେ ଗୁଣ୍ଡିଚାରେ ଉତ୍ସବ ଲାଗଇ ନାନା ଠାରେ । ଯେ ଯେମନ୍ତ ଭାବେ ଏହିମନ୍ଦିରେ ଭାବେ ଲଭଇ ତେମନ୍ତ ଫଳ ଜାଣ । ଶଙ୍ଖ ଚକ୍ର ଗଦା ପଦ୍ମଧାରୀ, ମୁକୁନ୍ଦ ମାଧବ ଦଇତାରି, ଦୀନବନ୍ଧୁ କୃପାସିନ୍ଧୁ ଜଗବନ୍ଧୁ ନାମ ଜପ ହୃଦେ ଅନୁକ୍ଷଣ । ୫ । ହୃଦେରେ ପକାଅ ହରିବୋଲ, ବିଷୟ ବାସନା ମନୁ ଭୁଲ । ପରମ ଦୟାଳୁ ଅଟନ୍ତି ଶ୍ରୀହରି ନାହିଁ ତାଙ୍କ ପରାପର ଜ୍ଞାନ । ୬ । କୃତାଞ୍ଜଳି ପୁଟେ ଭାଗୀରଥୀ, ରମାପତି ପଦ୍ମପାଦ ଚିନ୍ତି, ଅତି ବିନୟରେ ଭାଷଇ ଆଗ୍ରହରେ ନାଶ ଏହି ଭବ ଭୟମାନ । ୭ ।

———

ତାଳ—ଆଡ଼ଖେମଟା ।

ମେଘମାଳକୁ ହରିଦେ କଳାକୁ ।
ଗୁହାରି ବାରେ ମନ ! ଚକାଡୋଳାକୁ । ପଦ ।
ଏ ଭବ ସାଗର ତରିଗଲେ ଭକ୍ତ, ଆଶ୍ରେକରି ପାରନାମ ଭେଲାକୁ ।
ସଦା ଭଜ ହରି ହୋଇଲେ ଅମର, ବୋଲେ ଋଷିଛନ୍ତି ମହା-

ମାସ୍ତାଙ୍କୁ । ଗୁଞ୍ଜିମାଳାକୁ, ପିନ୍ଧ ଗଳାକୁ, ବସି ଜପୁଛନ୍ତି କଳା ଧଳାଙ୍କୁ । ୧ । ସତ୍ୟରେ ଶ୍ରୀପଦ, ସମୁଦ୍ରକୁ ମନ୍ଥି, ତହିଁରୁ ଜାତକଲେ କମଳାଙ୍କୁ । ଦେବାସୁର ଯୁଦ୍ଧେ, ଅମୃତ ବିବାଦେ, ମୋହନୀ ହୋଇଲେ ଦେବ ଛଳକୁ । ରାହୁ ଗଳାକୁ, କାଟି ହେଳାକୁ, ମୋହ-କଲେ ମହାଦେବ ଭୋଳାକୁ ॥ ତ୍ରେତୟାଯୁଗର, ରାମଅବତାର, ଭଜ ମନ ! ବାରେ ରଘୁକୁଳକୁ । ପାଇ ସୀତାଛଳ,ଘେନ କପିବଳ, ଶିଳାରେ ବାନ୍ଧଲେ ସିନ୍ଧୁ ଜଳକୁ । ଜାତ ଭେଳାକୁ, ରଣସ୍ଥଳାକୁ, କୋପେ ଛେଦଲେ ଦଶଗ୍ରୀବାଳାକୁ । ୩ । ଦ୍ୱାପର ଯୁଗରେ, ଜନ୍ମି ଗୋପପୁରେ, ହପାଡ଼ି ପକାଇଲେ ଯାମଳକୁ । କାଳିନ୍ଦୀରେ ପଶି, କାଳି ଦର୍ପଧ୍ୱଂସି, ନିବାଇଲେ ମହାବିଷ ଜ୍ୱାଳାକୁ । ଯାଇଁ ମେଲାକୁ, ରଙ୍ଗସ୍ଥଳକୁ, କପଟେ ବଧିଲେ ସେ ମଲ୍ଲାକୁ । ୪ । ଏ କଳି ଯୁଗରେ, କଳ୍ପବଟ ମୂଳେ, ମାଡ଼ି ବସିଛନ୍ତି ସପ୍ତଶିଳାକୁ । ଖିଆଇଲେ ଅନ୍ନ, ନେଲେ ଜାତିଧର୍ମ, କେହି ନ ଖୋଜିଲେ କାହା ଧର୍ମକୁ । କ୍ଷେତ୍ରସ୍ଥଳକୁ, ମୁକ୍ତି ଖଳାକୁ, ଯିବେ ହୃଦାନନ୍ଦ ଦନ୍ତ ମେଳାକୁ । ୫ ।

---

( ୮୮ )

ତାଳ—ଝେମଟା ।



ମନ ରେ ! ହରି ଭଜନ ଗ୍ରାଡ଼ି ।
ଦୁର୍ଲ୍ଲଭ ଜନମ କଲୁ ଅଗାଡ଼ି । ଘୋଷା ।

ମାତା ଗର୍ଭେ ଥାଇ, ଯାହା ଥିଲୁ କହି । ମର୍ତ୍ତ୍ୟରେ ପଡ଼ି, ଗଲୁ ରୁ ଭୁଲି ଭ୍ରମୁଅଛୁ ମିଛମାୟାରେ ପଡ଼ି । ୧ । ମରିଗଲେ ଶୁଦ୍ଧ, ନେବେ ଘୋଷ-ରାଇ, ତୋତେ ଦେଇ ଥିବେ ଛଖଣ୍ଡି ବାଡ଼ି । ୩ । ଛଣି ଦଉଡ଼ି, ବାନ୍ଧିବେ ଗୁଡ଼ି, ମଲ ମଲ ବୋଲି ଗୁହାରିବେ ରଡ଼ି । ୨ । ବନ୍ଧୁ ବର୍ଗ ଯାଇ, ତୋ ପାଶକୁ ଯାଇଁ, ପିନ୍ଧିଲା ବସନ ନେବେ ଛଡ଼ାଇ ॥ ତୋତେ ନେଇଯାଇ ଶମଶାନେ ଥୋଇ, ଅଗ୍ନି ଲଗାଇଣ ଦେବେ ସେ ପୋଡ଼ି । ୫ । ନ

କଳାଟକ ଫିଣ୍ଟ, ଦନ୍ତ ଖଣ୍ଡ ଖଣ୍ଡ, ଦୂରୁ ଦେଖୁଥିବ କେଉଁଠା ବାଡ଼ୁ । ୭ । ଶ୍ରୀମଦନ ଭଞ୍ଜଣ, କୃଷ୍ଣ ପୋଷଣ, ମୋ ମନ ରହନ୍ତୁ ନିରତେ ଲନ୍ତ । ୮ ।

---

( ୮୯ )

ତାଳ—ଏକତାଳୀ ।

ଜୟ ନୀଳାଦ୍ରି ବଦ୍ରାକ୍ଷ ହେ । ଦୀନବନ୍ଧୁ । ଜୟ ନୀଳାଦ୍ରି ବନ୍ଧାକ୍ଷ । ଭକତଙ୍କ ହୃତେ ନାମ ବହୁ ଅଛୁ କରେ ଶଙ୍ଖଚକ୍ର ଧରି । ଘୋଷା । ସୀତା ମାଳା ଧରି, ସୁତା ବାହୁନରି, ଭକ୍ତ ଡାକିଲ୍ଲ ଅରତେ । ଗରାଙ୍ଗ ପେଷିଲ୍ଲ, ଅଗ୍ରଣ ନାଶିଲ୍ଲ, ରକ୍ଷା କରିଲ୍ଲ ଗୁଣରେ । ୧ । ନାଗଲୋକ ରାଜ, ଚନ୍ଦ୍ରଭ ଅଭ୍ରଚ, ଡାକ୍ତା ଚକ୍ରକୁ ଆକୁଳେ । ଲକ୍ଷ୍ମୀ ନିବାରଣ, ଜଳ ହେ ତାରଣ, କୋଟି ବସ୍ତ୍ର ଦେଲ୍ଲ ହେଳେ । ୨ । ରାଗଶ୍ରୀ ଦୁଲାଳ ବନ୍ଧିତ୍ତୁ ମାରିଲ, ସଙ୍ଗେ ମରଣ ହୋଇଲ । ରାମନାମ ଅସ୍ତ୍ର, ଆସ୍ଥା-ଭୂତ ହରି, ଏକାକାଣ୍ଡକେ ବଧିଲ୍ଲ । ୩ । କହେ ସଦାନନ୍ଦ, ଦେବକୀନନ୍ଦନ, ମୁଁ ଅନାଥକୁ ଅଧିକ । କେଉଁ ପ୍ରିୟ ପୁଷ୍ପ, ହରିର ବାନ୍ଧବ, ଭ୍ରମର ଭସ୍ମରୁ ରକ୍ଷ । ୪ । ସମ୍ମୁଖର ପର, ଧନ ଧନ୍ୟ ପୁର, ଦଣେ ଅନା-ମୁଁ ଲଜାତ । ଅନ୍ତଃକାଳେ ଅରେ, ନାମ ଜପିବରେ, ବଇକୁଣ୍ଠେ ଦେଲ୍ଲ ସ୍ଥିତ । ।

---

( ୯୦ )

କର ସତ୍ୟ ଆଶ୍ରର ।

ଛେଦ ହୋଇଯିବ ପାତକ ଶ୍ୱର । ଘୋଷା ।

ଦୁର୍ଲଭ ଜନମ, ଦେଇ ନାରାୟଣ, ହେଉଅଛୁ ନାର ଖାର । ମାୟା ମୋହେ ଜଡ଼, କି ସ୍ୱା କର୍ମେ ପଡ଼, ହୋଇଲେଣି ସର୍ବେ ଦୁଷ୍ଟ ଅସୁର । ୧ । ପାପମାନ କରି, ଦୋକାନେ ଦୋକାନ, ବୋଝ ହୋଇଛୁ

ଶିର । ଗର୍ଭସ୍ଥେ ବୁଝିଲେ, ବ୍ରହ୍ମକୁ ଭଜିଲେ, ଦୋଷ ଅପରାଧ ହେବ ଭବ ଦୂର ।୨। କାହୁଁ ଦୋଷ ନାହିଁ, ମନୁହୁଁ ବୁଝାଇ, ବଚନ ସୁଧାଧାର । ଆଖି ନ ଦେଖିଲେ, ବୋଲି ନ ମାନିଲେ, ପଶ୍ଚାତେ ହେବ ଭବ ପୋଡ଼ା ଅଙ୍ଗାର ।୩। ସେ ଅଲେଖ ପ୍ରଭୁ, ଭଜ ହେ ତାହାଙ୍କୁ ନିଶ୍ଚେ ହେବ ଉଦ୍ଧାର । ସର୍ବେ ଅଭ୍ୟାଗତ, ଦେବତା ଅତିଥ, ସେବା ଭକ୍ତିକର ତାଙ୍କ ପୟର । ୪ । ସେହୁ ଅବଧୂତ, ମହିମ ବର୍ଣ୍ଣିତ, ଗୁପ୍ତେଛନ୍ତି ସଂସାର । ମନୁଷ୍ୟ ଶରୀରେ, କର ଏବେ ନ୍ୟାୟେ, ଶ୍ରୀଗୁରୁ ଗ୍ରନ୍ଥରେ ଦେଇ ଉତ୍ତର ।୫। ସତ୍ୟ ତ୍ରେତା ଯାଇ, ଦ୍ୱାପର ଯେ କଲି, ଯେଉଁ ଧର୍ମଟି ସାର । ଗୁପ୍ତ ଦେଖାଅଛୁ, ମାୟାରେ ପଡ଼ିଛୁ, ଭଣେ ଭୀମ ଭୋଇ ନିରତେ ଧର ।୬।

---

( ୯୧ )



ସିଂହଦ୍ୱାରେ ସତେ ଉଦ୍ଧିଛନ୍ତି ହେ ।

ନାଟପଦ । ଅଭି ଘର ମଣି । ଘୋଷା ।

ବ୍ରହ୍ମାଦି ମୁନିଗଣେ, ଆସିଛନ୍ତି ଚରଣରେ । ବେଦମୂର୍ତ୍ତି ବ୍ରହ୍ମ-ମାନେ ଉଠିଛନ୍ତି ଛବ ଧ୍ୟାନେ । ବେଦଧ୍ୱନି ଦ୍ୱାରେ କରୁଛନ୍ତି ହେ ।୧। ଅସିଛନ୍ତି ରୁଦ୍ରକୁଳ, ଘେନି ଡମ୍ବରୁ ତ୍ରିଶୂଳ । ଋଷିକୁଳ ନଗାଳ ଆଣି ଛୀଟୁଛନ୍ତି ଜଳ । ଅବ୍ୟକ୍ତ ବସ୍ତୁ ଆସିଛନ୍ତି ହେ । ୨ । ନନ୍ଦକାର ଅତ-ଳନ୍ଦ, ସଙ୍ଗେ ଘେନି ଦେବବୃନ୍ଦ । ବାଜୁ ଦୁନ୍ଦୁଭି ବାଦ୍ୟ, ନାଚୁଅଛନ୍ତି ଉନମାଦ । ପାରିଜାତ ପୁଷ୍ପ ଆଣିଛନ୍ତି ହେ ।୩। ଗୁଣବେଦ ହୋଇ ଠୁଳ, ମଢ଼ୁଅଛନ୍ତି ମଙ୍ଗଳ । ଦର୍ଶନେ ଅଖଣ୍ଡଳ, ଭକ୍ତି ହୁଏ ନେଳୁବେଳ । ବଟ ନାହିଁ ଛନ୍ତି କନ୍ଦାକନ୍ଦି ହେ । ୪ । ଛପନକୋଟି ଜୀବ ଯେତେ, ପଡ଼ି ପାଇବା ନିମନ୍ତେ । ଆଶା କରିଛନ୍ତି ଚଳେ, ହସ୍ତକୁ ପାତ ସମସ୍ତେ । ନେଲେ ତାହିଁ କୁଟୁମ୍ବ ପୋଷନ୍ତି ହେ । ୫ । ଭଣେ ଭୀମସ୍ୱାମୀ ଭୋଇ, ଶ୍ରୀଗୁରୁ ଚରଣ ଛାୟି । ଥିବେ କେତେ

ଠଆ ହୋଇ, ଦୟା ହେଲେ ଯିବେ ସେହି । ଜଣାଉଛି ଯେନ ମୋ ବନତ ହେ । ୬ ।

---

( ୯୨ )

ନରତେ ଭଜ ତରବ ଭବସସାରୁ ହେ ।
ନ ମ ବନ୍ଧ ଆସୁଅଛି ଅକ୍ଷେଅକ୍ଷରରୁ । ପଦ ।

ପୁଷ୍ପ ସ୍ନେଗ ତ୍ୟାଗକର, ଭୂମି ଅସନେ ବନ୍ଦର । ଜନ୍ମ ମୃତ୍ୟୁ ନବ ରଣ କର ଅଙ୍ଗରୁ । ୧ । କମ ୍ରୋଧ ଲୋଭ ମୋହ ଛନ୍ଦ-ବାଦ ହିଂସ ଦ୍ରୋହ । ଆସ୍ତବ ଜଗାଇ ରଖ ଜ୍ଞାନ ତନ୍ତ୍ରରୁ । ୨ । ଟଚ ମିଛ କଥା ଚୁଡ଼, ନବେଦରେ କର ଦୃଢ଼ । ସେବା ଜଗେ ସୁଧା ପାନ କର ପଦ୍ମରୁ । ୩ । ସେହିଟି ପୃଥ୍ୱୀ ତଳ, ଫୁଟି ସେସନେକ ଫୁଲ । ଦଶ ଅବତାର ଅଡଯାତ ସେଠାରୁ । ୪ । ଘୃଣଯୁଗେ ନାମ ଏକ, ଏତେବେଳେ ତାଙ୍କ ଡାକ । ନଷ୍ଟସ୍ଥ ତରବ ଶ୍ରୀଗୁରୁଙ୍କ ଅଜ୍ଞାରୁ ।୫ ଭଣେ ଧ୍ରମ ଅରକ୍ଷିତ, ଦୟାନଶି ଦେଇ ଚଞ୍ଚ । ଏତକ ମେ ର ବନ୍ଧୁତ ସାଦ୍ଧ କର ନନ୍ଦରୁ । ୬ ।

---

( ୯୩ )

ତାଲ—ଛ ପକା ।

ଜନ୍ମଅଛି ଚଇତନ । ଖୋଜ ସାଧୁ ସଙ୍ଗ ତନ୍ତ୍ର । ଗୁରୁଙ୍କ ଗୁପତ ଜ୍ଞାନ । ଯେ ଟିଛି ଅଶେଷ ବନ୍ଧୁ । ଉଦ୍ବେଗିଣ । କାଉଁରୀ ମନ୍ତ୍ରକୁ ଆସେ ଫେଉ ଫେଉ । ୨ । ଚନ୍ଦ୍ର ସୂର୍ଯ୍ୟ ବନ୍ଦ କର । ଷଡ଼ଚକ୍ରରେ ବନ୍ଦର । ଜୀବ ପରମ ବସ୍ତୁର । ଝୀନ ନାଲେ ସ୍ନେର ଧର । ନନ୍ତ୍ୟ ଦଳେ । ଅଷ୍ଟସଖୀ ସେବା ଦେଖା ନଉଲ୍ଲରେ । ୨ । ଟେକ ଟାକଲେ ପାଇବୁ । ଠୂଳବ୍ରହ୍ମକୁ ଚନ୍ଧ୍ରୁ । ଡମରୁ ଘୋଲ ଭେଦବୁ । ଡାକ୍ତଣୀ ଟାଣ କଉରୁ । ଅଣାକାର । ଆକାର ମଞ୍ଜର ମନ ହେଉଛକର । ୩ ।

ଚଉଦଳ ଏକ କଣରୁ । ଯୋନାଏ ନାଶ୍ଟରେ ଥିବୁ । ଦ୍ଵିଦଳ ମଧ୍ୟେ ଯିବୁ । ଧୀରେ ସୁଧୀରେ ଯିବୁ । ଶୀକାଶରୁ । ଚଉର୍ଦ୍ଧ ମୂତ୍ରଡ ଛନ୍ତ ଦ୍ଵେଜ କର । ୪ । ପଦ୍ମ ପାଦେ ମଧୁରସ । ଫୁଙ୍କା ବନ୍ଧେ ଯଉ ବାସ । ବ୍ରହ୍ମା ଶିବ ତାର ଦାସ । ଭଜ ନ ପାଇଲେ ଲେଶ । ମଧୁ ପାନେ । ପିଇ ଭକ୍ତ ହେଲ ହେଲେ ଦ୍ଵତଶ୍ଚନେ । ୫ । ଜାଣି ନାରଦ ପିଇଲେ । ଉପେ ବ୍ରଜରଙ୍ଗ ଥିଲେ । ନବଧା ଭକ୍ତ ଲଭିଲେ । ବୃନ୍ଦାବନେ ରାସ କଲେ । ସୁଭ ନାଖ ସୁଖେ ଗାଇ ନସ୍ଵନରୁ ବହେ ନୀର । ୬ । ସୁମନ ମୋ ବୋଲକର । ସୁଧବ ଅଙ୍ଗକୁ ଧର । ଦଶବେ ଦୁଃଖ ରୁନ୍ଧର । ଷମାନଧ୍ୟନ୍ଙ୍କ ପଦ୍ମର । ଷିର ଚଲେ । ଗୁରୁ ଜଗା ନ ପାଇଲ ଅଞ୍ଜନରେ । ୭ ।

---

( ୯୪ )

ତାଲ - ଝେମଟା ।

ରାଧେ କୃଷ୍ଣ ଗୋବନ୍ଦ ଭଜ ।
ନାମାମୃତ ପାନେ ନିତେ ମଜ୍ଜ । ଘୋଷା ।

ଅଚ୍ଚ ଆରତର ଅଗାଧ ଜଳରେ ଲକ୍ଷେ ଯୋଜନରେ ତାଙ୍କର ଗଜ । ତାଙ୍କ ସ୍ଵଣି ଚଇ, ପେଶି ଦ୍ଵାଣି ନଇ, ଜକୁ ଉଦ୍ଧାରିଲ ସେ କୃଷ୍ଣରାଜ । ୧ । କୁରୁ ସଭାତଳେ, ଦ୍ରୌପଦୀ ଆବୁଲେ, ଦୁଃଖ ଜଣାଇଲ ହେ ଦେବରାଜ । କୋଟିବସ୍ତ୍ର ଦେଇ ଉଲଙ୍ଗ୍ନ୍ୟ ଛାଡ଼ୁ, କଲ ଦସ୍ତାସିନ୍ଧୁ ଦେବାଧିରାଜ । ଗର୍ଭିଣୀ ହରିଣୀ, କପଟିଙ୍କ ଜାଣି, ତାଙ୍କୁ ଉଦ୍ଧାରିଲ କେଡ଼େ ଅଶ୍ଚର୍ଯ୍ୟ । ଚନ୍ଦ୍ରକେ ହୃଦର, ପ୍ରହ୍ଲାଦ କୁମର, ଧ୍ରୁବ, କେତେ ନାଶିଅଛ ଦନୁଜ । ୩ । ପ୍ରଭୁ ଆଦ ଅନ୍ତ, କେ ଜାଣିବ ଅନ୍ତ, ଅନନ୍ତ ଅରୂପ ସ୍ଵରୂପକୁ ଭଜ । କହେ ବ୍ରହ୍ମାନନ୍ଦ, ସେ ପାଦକୁ ଧ୍ୟାୟି, ବନ୍ଦସ୍ବା ବନ୍ଧନ୍ତୁ ଦୂରକୁ ତେଜ । ୪ ।

---

( ୧୫ )

ତାଳ—ରୂପକ ।

ପରଲେ ହୋଇ ପାଗଲେ ଅଣ ଆକାରେ ।
ନଷ୍ଟେ ଭେଟ ପାଇବୁ ରୁ ଅମନ ସ୍ୱରେ । ପଦ ।

ସ୍ୱଇ ସ୍ତ୍ରୀଣ ମମତ୍ୱକୁ, କ୍ଷୁଧା ତୃଷ୍ଣା ଅସ୍ୱସ୍ତିକୁ, ଆଶା ଭରସା ସବୁରୁ ତେଜିବୁ ଦୂରେ । ଅବାଇ ମଣ୍ଡଳେ ବାଇ । ନେଇ ପାଗଲେ ପ୍ରସ୍ତ । ତେବେ କି ପ୍ରବେଶ ହେବୁ ଗୁରୁ ଦ୍ୱାରେ । ୧ । ଅଦେଖା ଦେଖିଲେ ଯାଇଁ, ଅସ୍ୱାଦ ପଇବେ ଖାଇ, ସାଧୁ ସଙ୍ଗ କଲେ ପୂର୍ବ ପ ତନ ଦରେ । ଅକଳଣ ବ୍ରହ୍ମେ ଧ୍ୟାନ, ଲୟ କଲେ ସ୍ୱର ଧନ, ବଡ଼ାଇଲେ ପିଣ୍ଡ ପ୍ରାଣ ନୂତନ ଧରେ । ୨ । ଅଦେଖା ଦେଖିଲେ ସର, ଅଜପା ଜପିଲେ ପର, ଅଚହ୍ନାକୁ ଚହ୍ନି ଭଜ ଅଣରୂପରେ । ଚରବକୁ ଥିଲେ ଆଶ, ନବେଦ କର୍ମରେ ପଶ, ସଦଜ୍ଞାନ ମୁକ୍ତିପଦ ଗୁରୁ ଦୁଆରେ । ୩ । ପିଣ୍ଡ ପ୍ରାଣ ତ୍ୟାଗ କରି, ଜନ୍ମ ମୃତ୍ୟୁକୁ ନ ଡରି, କାଳ ବିକାଳକୁ ନିବାରିବ ଇଷ୍ଟାରେ । ବ୍ରହ୍ମ ଅନଳ ଦହନ୍ତି, ଜାଳି ଫିଟ ଅ କୁହୁଡ଼, ଅର୍ଗଳ କବାଟ ଫିଟିଯିବ ସ୍ୱଧୀରେ । ୪ । ଅଲେଖ ଧୂର ଭୁବନ, ଯାହିଁ ତାଙ୍କ ବଡ଼ ସାନ, ସମାନରେ ଦସ୍ତା ଦୁଷ୍ଟ ସଙ୍କୀର୍ତ୍ତନରେ । ଭଣେ ଶ୍ରୀମନ୍ତ ସେନ ହେଇ, କେ ବୋଲିବ ମିଥ୍ୟା ଏହୁ, ଲକ୍ଷ୍ମୀ ଲଗାଇ ଉଠ ଶୂନ୍ୟ ଶିଖରେ । ୫ ।

---

( ୧୬ )

ଭା — ଆଡ଼ ଖେମଟା ।

ମଦନମୋହନ ଗୋପୀନାଥ ଗୋବିନ୍ଦେ ଚଉ ମଣ୍ଡଳରେ ।
ହକାର ଦକାର ମକାର ପାତକ ବ୍ରଜ ବଜାଉଛେ ଦଳ ରେ । ପଦ ।
ମାଣ୍ଡ୍ରେ ପଙ୍କ ବାସ୍ନା ନ ଧୁଏ । ବାସ୍ନା ଯମୁନା ଜଳରେ ଧୁଏ ।
ଦଗ ସୁତ ବନ୍ଧ ପଡ଼ ସେବକ ବୃନ୍ଦା ବିପିନରେ ଯଅରେ । ୧ ।

କୁଣ୍ଡ ନମ୍ବାଳ ଜଳ ମୁଣ୍ଡରେ । ବସି ଧ୍ୟାନ୍ତ ରାଧା କୃଷ୍ଣ ରୂପରେ । ଶିଣ୍ଡ କୃତାର୍ଥ କର ଏ ସ୍ୱାର୍ଥ । ଫେର ଏ ବ୍ରଜବଜାରେ । ୨ । ଧୀର ସମୀର ଶ୍ରମ ବିନାଶ । ଯମୁନା ଜଳରେ ମନକୁ ତୋଷ । ବ୍ରଜବାସୀ ଦାସୀ ହେବ ବୋଲି ବ୍ରଜେ ଜସ୍ୱ ଭ୍ରମି ବଜାରେ । ୩ । ଭାଉ ମଧୁକର ଗୁଞ୍ଜର ରୁ ଳିକ୍ଷା । ରୁଚି ମାଳପୁଆ ଖୁରୁମା ଗଜା ଛନ କର ମନ ସୁଖେ କର ପାନ । ମୋହନଭୋଗ ମଞ୍ଚାରେ । ୪ । କର ସ୍ୱପସ୍ଥଳ ସ୍ୱାସ ସେବନ । ବନେ ବନେ ଫେର ସେବ ସୁଜନ । କଥାମୃତ ପାନ କର ତୋଷ ମନ । ଯମ ଦାଉଦ ଦ୍ୱାରେ । ୫ । ଦୀନ ଲୋଚନ ରସେ ସ୍ପର୍ଶିତ । କେବଳ ଗୁରୁ-ପାଦେ ମୁଁ ଆଶ୍ରିତ । ପରତ ବରଜବାସୀଙ୍କର ସଙ୍ଗେ । ଶ୍ରୀବ୍ରଜ ମଣ୍ଡଳେ ଯାଆଟେ । ୬ ।

---

(୧୬)

ତାଳ—ଝପତାଳ

ଅରେ ମୂର୍ଖବାଇ ! ଗୁରୁସେବା ବଳେ ବିନା ଜ୍ଞାନ ପାଇ । ପଦ । କୋଟି ବ୍ରହ୍ମା ବିଷ୍ଣୁ ଶିବ ଗଲେ, ଅପ ଗାଇମାନେ ନ ପାଇଲେ । ସାବ ଖେଳେ ପଣ୍ଡ, ଭବେ ଗଲେ ବୁଡ଼ି, ବୃନ୍ଦେ କେହି ଜ୍ଞାନ ହୋଇ ନାହିଁ । ୧ । କାମେ ଆତଯାତ ଜୀବଜନ୍ତୁ । ସଦଗୁରୁ ପାଦେ ଲଗା ହେଉ । ଅନେକ ସାଧିଲେ, ଅନ୍ତ ନ ପାଇଲେ, ବାହାର ଗଲେଣି ଦେହ ବନ୍ଧ । । ୨ । ଲକ୍ଷପଦ୍ମ ଗଣ୍ଡା ଯୁଗ ଟେଣ୍ଡ । କୋଟି କଲ୍ପାନ୍ତରେ ହୋଏ ମନ୍ତ୍ର । କୌଣସି କାଳରେ, ନ ପାଇ ଠିକରେ, ବ୍ରହ୍ମା ଆସ୍ଥାନକୁ କେ ନ ଯାଇ । ୩ । ମନକୁ କର ପାଗଲେ ସବୁ । ତେବେ ଭେଟ ହେବେ ସଦଗୁରୁ । କବାଟ ଅର୍ଗଳ, ସୂଚ ରନ୍ଧ୍ରେ ଗଳ, ବସୁରେ ନିକଟେ ଅଛୁ ରହି । ୪ । ମାଂସ ଫୁଟେ ଏ ଦେହରେ ଅଛୁ । ବ୍ରହ୍ମହ୍ମ କଠିନ ବୋଲୁଅଛୁ । ଜଳ ପବନର,ଭେଦ ନାହିଁ ତହିଁ, ଅଭସ୍ମ ମଣ୍ଡଳ ତ କୁ କହି । ୫ । ଭଣେ ଅରକ୍ଷିତ ଧାମ

କନ୍ଧ, ସେଠାକୁ ସୁଜ୍ଞଜନ ଜନେ ଭେଦ । ବ ଦ୍ୱାରେ କେଉଡଲେ, ନ ମିଳଇ ଭଲେ, ଘଟେ ଖେଦାନ୍ତରର ଭାବ ପଇ ॥



( ୯୮ )

ଚାଳ—ଝଉଣ୍ଟେଖେମଟା

ଜ ଜାନୀ ହୃଦେ କମଳ ଫୁଟିଛୁ । ଝିନ୍ନନାଦେ ନଳେଞ୍ଜନ ଖେଳୁଛି । ହୋ ବାଇମନ । ଏହେ ଅନ୍ତ ଦୁଇ ଚେଷ୍ଟ । ସୁଦ୍ଧାତ୍ମା ବନ୍ଧନ୍ତା ଶୋରଚା ବକଚା ଏକା ଘରେ ଭିନ୍ନ ଭିନ୍ନ । ୧ । ଛଦ୍ଧ ଚଉବନ ଛପନେ ରଖ । ଜୀବ ପରମ ଏକ ଘରେ ଦେଖ । ଝର ଝର ଝନଝର ବଜୁଛୁ । ନ ବ ଖଟାଇ ତଯାଇ ରହୁଛୁ । ବାଇମନ । ଟେକ ରୁ ବାନ୍ଧା ଉଡାନି । ଠୂଳ ଶୂନ୍ୟରୁ ଆତଯାତ ହେଉଛୁ ଗୁରୁ ସେବା ଥିଲେ ଜାଣି । ୨ । ଡଙ୍ଗର ଫଟିଛୁ ଚକ୍ଷୁ ଦୁଆରେ । ଢେଉ ପଙ୍କଜ ମାରୁଛୁ ନାସାରେ । ଅନାହତରୁ ଶବଦ ଶୁଣୁଛୁ । ହିପୁଷ ହିପୁଷ ବାସ କରିଛୁ । ବାଇମନ । ଅଯୁ କର ପଞ୍ଚାନନ । ଦେଉଳ ଦୁଆରେ ଦେବତା ରହିଛୁ ପାରିଲେ କର ଦର୍ଶନ । ୩ । ଧ୍ୟାନକୁ ନେଇ ନାସାରେ ରଖିବୁ । ନବକାରେ ନିରଞ୍ଜନ ଦେଖିବୁ । ପଲକ ନ ପାଡ ରହିବୁ ଯେବେ । ଫୁଲ୍ଲ ବନ୍ଧେ ନୃତ୍ୟ ଦେଖିବୁ ତେବେ । ବାଇମନ । ବଟପୁଟେ ବନେ ହର । ଭକ୍ତ ଭାବକୁ ଅନୁସାର ଛନ୍ତି ଘଟେ ଘଟେ ଛନ୍ତି ପୂବ । ୪ । ମୁକୁନ୍ଦ ମାଧବ ମଧୁସୂଦନ । ଜୀବ ପରମ ନୋହେ ଭିନ୍ନ ଭିନ୍ନ । ଯାଉଛୁ ଶବଦ ଶୂନ୍ୟରୁ ଆସି । ଲହରି ମିଶାଇ ମାରୁଛୁ ଫେଣି । ବାଇମନ । ବଙ୍କନାଳେ ଆତଯାତ । ଶୂନ୍ୟ ପୁରୁଷ ଯେ ଶୂନ୍ୟରେ ରହିଛୁ ଜଗୁ- ଅଛୁ ପରମାର୍ଥ । ୫ । ସକାର ମକାର ଅକାର ଧ୍ୱନି । ଓଙ୍କାର ଉପରେ ବେଦର ଧ୍ୱନି । ହଶ ଅକ୍ଷର ପ୍ରହ୍ଲାଦ ଘର । କୃଷ୍ଣ ସ୍ମରଣର ଯସ୍ୱ ଅକ୍ଷର । ହୋ ବାଇମନ । କ୍ଷମାକର ମୋର ଦୋଷ । କ୍ଷମେ ଅଧମ ଗୋସ୍ତ ଧର ଲହଇ ପଦ୍ମପାଦ ତଳେ ଆଶ । ୬ ।



( ୯୯ )

ରାଗ — ଯତି

କୃପାସିନ୍ଧୁ ଦୀନବନ୍ଧୁ ଅଘ-ତମ ଇନ୍ଦୁ ହେ ।
କୃପାକରି କରପାରି ବେଗେ ଭବସିନ୍ଧୁ ହେ । ଘୋଷା ।

ମମତା ମୋହ ଫାନ୍ଦେ ପଡ଼ି ସୁପଥ ଛାଡ଼ିଲି ହେ । ପାପତାପ ମାରେ ଅବଶେଷରେ ପଡ଼ିଲି ହେ । ୧ । ଧର୍ମ ନାଶ ରସ ତନ୍ତ୍ର ଅର୍ଥ ଆସେ ଧରି ହେ । ଏଣେ ତେଣେ କରୁଅଛୁ ଓଟରୁ ଓଟରି ହେ । ୨ । ବ୍ୟଥିତ ଚିତ୍ତ ଆରତ ହୋଇଲା ପ୍ରବଳ ହେ । ସଖିଳଣି ବୁଦ୍ଧି ଶୁଦ୍ଧି ଅଙ୍ଗେ ନାହିଁ ବଳ ହେ । ୩ । ତୁମ୍ଭ ନାମ ଚନ୍ଦ୍ରିକା ଚେତନା ହେଲେ ଉଦେ ହେ । ବଶୀକରିକା ଦେଖାଇ ଭୁଲାଏ ଭ୍ରମ ବାଦେ ହେ । ୪ । ବୁଡ଼ିଲି ବୁଡ଼ିଲି ବୃଥା ଲୋଭେ ମତ୍ତ ହୋଇ ହେ । ଦୁର୍ଲ୍ଲଭ ମାନବ ଜନ୍ମ ଦୁଃଖରେ କଟାଇ ହେ । ୫ । ପଶିଲି ତୁମ୍ଭ ଅଭୟ ପାଦରେ ଶରଣେ ହେ । ଭଣେ ଭାଗୀରଥି ଦେବ କର ପରିତ୍ରାଣ ହେ । ୬ ।

---

( ୧୦୦ )

ମୁଁ ଯେତେ ଖୋଜିଲି, ଭେଟ ନ ପାଇଲି, ଯମୁନା କଳିନ୍ଦୀର ତ୍ୱାଟ-ଠରେ । ମନ ଦୃଢ଼ କରି, ଯହିଁ ଉଣ୍ଡାଇଲି, ଅନୁଭବ ଦେଖିଲି ତଡ଼-ରେ । ଘୋଷା । ଧନ୍ୟ ସେ ବ୍ରହ୍ମାଣ୍ଡି ତଡ଼ାଗ୍ର ଦେଖିଲି ଅପଣ୍ଡା ନିର୍ବାଣ ବାରସିରେ । ଦର୍ଶ ନାହିଁ ପର୍ଶ୍ୱା ଚିତ୍ତର ଲଗିଉଛୁ ଦର୍ଶ ବସିଛନ୍ତି ତହିଁପରେ । ୧ । ଫୁଟିନାହିଁ ପୁଷ୍ପ ଆମୋଦ ଦେଉଛୁ ଯାଉ ଯୁଗ ମଞ୍ଚୀ ବର୍ଗସ୍ତରେ । ଘଣ୍ଟା ନାହିଁ ଶୂନ୍ୟ ଶବଦ ଶୁଭୁଛୁ ଦର୍ଶ ବସିଛନ୍ତି ତଥିପରେ । ୨ । ଉମାଜ ନମାଜ ଧ୍ୟାୟ କରି ଗୁରୁ ଗୁରୁ ନାହିଁ ଚେଲା ସେ ମଠରେ । ଚେର ନାହିଁ ବୃକ୍ଷ ପଲ୍ଲବ ରହିଛୁ ତା ଡାଳ ମେଲିଛୁ ଗଗନରେ । ୩ । କହଇ ଗଣକ ଚରଣ ସୋଦର ଜପାମାଳା ଜପୁଅଛୁ କରେ । ଉବା ନଣ୍ଡି ବସି ତୁମ୍ଭ ନାମ ଘୋଷ ହୃଦସ୍ଥ ମଧ୍ୟରେ ଧ୍ୟାନକରେ । ୪ ।

---

# ବଙ୍ଗଳା ଭଜନ

( ୧୦୧ )

କେଦାର—କଓ୍ୟାଲି

ଅହଙ୍କାରେ ମତ୍ତ ସଦା ଅପାର ବାସନା, ଅନିତ୍ୟ ଯେ ଦେହ ମନ ଜେନେ କି ଜାନନା । ଘୋଷା । ଶୀତ ଗ୍ରୀଷ୍ମ ଅନ୍ଧ ସବେ ବାର ଛଅ ମାସ ରବେ, କନ୍ତୁ ତୁମି କୋଥା ଯାବେ, ଏକୋବାରେ ଭାବିଲେ ନା ୧। ଏ ଭାରତେ ଚଲ ଶୁନ, ତ୍ୟଜ ରଜତମ ଗୁନ, ଭାବ ସେଇ ନିରଞ୍ଜନ, ଏ ବିପତ୍ତି ରବେ ନା । ୨ ।

---

( ୧୦୨ )

ପୂରବୀ—ଆଡ଼ା

ଦିବା ଅବସାନ ହଲୋ କି କର ବସିୟା ମନ । ଉତ୍ତରିତେ ଭବ-ନଦୀ କରେଛ କି ଅୟୋଜନ । ଘୋଷା । ଅଳ୍ପ ଦୁର୍ଯ୍ୟ ଅସ୍ତ ଯାଏ, ଦେଖିଏ ଦେଖନା ତାଏ, ଭୁଲିଏ ମୋହମାୟାଏ, ହରେଛ ତତ୍ତ୍ୱଜ୍ଞାନ ।୧। ନିଜ ହିତ ଯଦି ଚାଓ, ତାହାର ଶରଣ ଲଓ, ଭବକର୍ଣ୍ଣଧାର ଯିନି ପାପ ସନ୍ତାପ ହରଣ । ୨ ।

---

( ୧୦୩ )

ସିନ୍ଧୁକାଫି—ଠୁଂରୀ ।

ଗୌର ପାଦ କର ଧ୍ୟାନେ । କାମ କ୍ରୋଧ ଲୋଭ ମୋହ ଛୟ ଶତ୍ରୁ ଛୟ ଦଲେ ଟନେ । ପଦ । କେହ ବଲେ କୃଷ୍ଣରାଧା, କେହ ବଲେ ଅଲ୍ଲା-ଖୋଦା, ଇହାତେ ନାହିଁ କି ବାଧା, ଯାର ଯେଇ

ମନେ ।୧। କେହୁ ବଲେ ମାନ ନା ମକ୍କା, ପିଡ଼ାସ୍ତେ ବସେ ପୀରେର ଦେଖା, ଇହାତେ ବଡ଼ଇ ବାଙ୍କା, କତଇ କୁମନ୍ତ୍ରଣା ଜାନେ ।୨। କେହୁ ବଲେ ଗୟା ଯାବ, ଶ୍ରାଦ୍ଧ କରେ ପିଣ୍ଡ ଦବ, ପିତୃଲୋକେ ଉଦ୍ଧାରିବ, ଏଇ ବାସନା ମନେ ।୩। ଗୁରୁ ପଦେ ନହିଲ ମତି, କଥା ଶୁନେ ନା ଏ ଦୁର୍ମତି, ନା ହଇଲ ନିଷ୍ଠା ରତି ବେଡ଼ାସ୍ତେ ତୀର୍ଥ ପର୍ଯ୍ୟଟନେ ।୪।

---

( ୧୦୪ )

ବାଉଲ—ସୁର

ହୁଗନାମ ଖସା ଗୁଡ଼ୁକ, ଭୁଡ଼ୁକ, ଲୁଡ଼ୁକ, ଟାନ୍ ଦେଖି ମନ୍ ଦବାନସି । ନେଶାସ୍ତେ ଗା ମେତେ ଯବେ ମଜା ପାବେ ମନେ ମନେ ହବ ଖୁସି । ଭକ୍ତି ଜଲ କେଲେ ସେକେ, ଟାନ୍ଲେ ତେଜେ, ହୃଦ୍ବରେ ମଜା ବେଶି ବେଶି । ପ୍ରବୃତ୍ତି ହୁଁ କୋ ଧରେ, ଯତ୍ନ କରେ ଦମ ଲଗାଓ ତାଏ ବସି ବସି ।

---

( ୧୦୫ )

ବିଭାସ—ଅଡ଼ାଠେକା

ତୁମି କାର, କେ ତୋମାର, କାରେ ବଲ ହେ ଆପନ ମୋହ ମାୟା ନିଦ୍ରାବଶେ ଦେଖିଛ ସ୍ୱପନ ॥ ନାନାପକ୍ଷୀ ଏକବୃକ୍ଷେ, ନିଶିତେ ବିହରେ ସୁଖେ, ପ୍ରଭାତ ହଇଲେ ଦଶଦିକେତେ ଗମନ ॥ ତେମନି ଜାନିବେ ସବ, ଅମାତ୍ୟ ବନ୍ଧୁ ବାନ୍ଧବ, ସମୟେ ପାଲାବେ ତା'ରା ନ କରେ ବାରଣ ॥ କୋଥା କୁସୁମ ଚନ୍ଦନ, ବିନାଦସ୍ତ୍ର ଆଭରଣ, କୋଥା ବା ରହିବେ ତବ ପ୍ରାଣ ପ୍ରିୟଜନ ॥ ଧନ ସମ୍ପଦ ମାନ, କୋଥା ରବେ ଅଭିମାନ, ଯଖନ କରିବେ ଗ୍ରାସ ନିଷ୍ଠୁର ଶମନ ॥

---

( ୧୦୭ )

## ଭୈରବୀ—ଏକତାଲ ॥

ଯାଏ ଦିନ ଜୀବ ମଜ ନା ଜାନକୀଜୀବନାମ୍ବୁଜ ଚରଣେ । ସ୍ମରନ ମନେ ସେ ରଘୁବଂଶତିଲକ, ତ୍ରିଲୋକପାଳକ ପ୍ଳକ ପାବେ, ଯାବେ ସବ, ହବେ ସବ, ପାପଲ୍ୱଯବ-ଗ୍ରାସବ ସ୍ମରଣେ ॥ ଦିନମଣି କୁଲେ ଉଦ୍ଭବ ଭବକାଣ୍ଡାରୀ ଏ ନ କରିଲେ । ଭବ-ଜଲଧିକଲେ ତଗିବ ତାକ ଦାସ୍ୟ ଜଳଧି ଜଳଦବରଣେ । ସେ ଚରଣେ ଜୀବ ଜନ୍ମେନ ଜାହ୍ନବୀ, ପରଶେ ଚରଣ ପାଷାନ ମାନବୀ, ଅଦ୍ଭୁଲ୍ୟ ବଧି ଶଙ୍କିରବ, ପଦେ ଅବନୀ ଧନ୍ୟ କରନେ । ନକ୍ତ ଚଗିତ୍ରକ, ଭକ୍ତଭସ୍ମାନ୍ତକ ବ୍ୟକ୍ତ-ଗନ ବେଦ ପୁରାଣେ ॥ ଦାଶରଥି କିପା ବନେ କେବଲ୍ ଆଗ୍ରେ ଦାଶରଥି ଦୀନଦୁଃଖ ହରଣେ ॥

---

( ୧୦୮ )

## ଭୈରବୀ—ଝେମଟା

ଏ ଜୀବନେର ନାଇରେ ଆଶା । କର ଶ୍ରୀଗୁରୁ ଚରଣେ ଭରସା ॥ ଦେହରେ ଗୌରବ କର ମିଛେ, ନଶ୍ୱରେର କି ବିଶ୍ୱାସ ଆଛେ, କାଲ ଶମନେ ଜାଲ ପାତେଛେ, ଭାଙ୍ଗବେରେ ତୋର ସୁଖେର ବାସା ।୧। ସ୍ତ୍ରୀ ବନ୍ଧୁ ଦାରା ସୁତ, ତାରା କେବଲ ପଥେର ପରିଚିତ, ମରିଲେ ପର ହବେ ଗତ, କେ ତୋରେ କରେନା ଜିଜ୍ଞାସା ।୨। ଆପନ ଆପନ ବଲେ ଜାନରେ, କେହିତ ସଙ୍ଗେ ଯାବେନା ରେ, ଶରୀର ନାଚେ କାନ୍ଦେ କରେ ନଦୀର କୂଲେ ହବେ ବାସା ।୩। ଗୋସାଇଁ ସଦାନନ୍ଦ ବଲେ, ଗୁରୁର କିପା ନା ହଇଲେ, ମୁକ୍ତି ନାହିଁ କୋନ କାଲେ, କେବଲ ଭବେ ଯାଓୟା ଆଶା ।୪।

---

Digitized by srujanika@gmail.com

( ୧୦୮ )

ହର ସ୍ତୋତ୍ର

ଅହରହ କର ମନ ହରପଦ ସ୍ମରଣ । ଅପଚସ୍ତ ହସ୍ତ ଝସ୍ତ ଭବ-ନଦ ତରଣ ॥ ମନଗତ ମଦ ଯତ କର ସତ ଦମନ । ତତ୍‌ପଦାରତ ରହ ଜସ୍ତ କର ଶମନ ॥ ତପ ଜପ କତମତ କର ଯତ ଯତନ । ହରପଦ ଭବଫଲ ସମ ନସ୍ତେ କଖନ ॥ ଅଥ ମନ ସଯତନ ଧର ସମ ବଚନ । ବଲ୍‌ବଲ ହର ଜସ୍ତ ହର ହର ଚରଣ ॥

---

( ୧୦୯ )

ତାଳ — ଝେମଟା

ହେଲଚେ ରତନ ହାଗ୍ୟୋନା ମନ ହରି ହରି ବଲ ବଦନେ । ହରି ବୋଲ୍ ହରି ବୋଲ୍ ବୋଲ୍ ଶୟନ ସ୍ୱପନେ ଜାଗରଣେ ।ପଦା ଅହଙ୍କେର ସୁଖ ହଲେ ନା ବଲ୍ୟ, ତା ବଲେ କ ନମ ଯାବ ରେ ଭୁଲ୍ୟ, ଯାର ନାମେ, ଯାର ପ୍ରେମେ, ହଲେନ୍ ଶୁକଦେବ ସୁଖୀ, ହଲେନ୍ ନାରଦ ବୈରାଗୀ, ହଲେନ ମହାଦେବ ଯୋଗୀ, ବେଡ଼ାନ ଶ୍ମଶାନେ ମଶାନେ ଯୋଗଧ୍ୟାନେ ।୧। ଡଂକା କରେ ଯେ ଦନ୍ ଯାବରେ ଫହାର, କୋଥାଏ ରବେ ତୋର ପୁତ୍ର ପରିବାର, ଅପାର ଫହାର ଅକ୍ଷି ମୁଦ୍‌ଲେ ଅନ୍ଧକାର, କେବଳ ହରି ନାମ ସାର, ରେଖ, ଧର ମନ ହରିଚରଣେ ।୨। ପୃଥ୍ୱୀଶଯ୍ୟାସ୍ତେ ଯେ ଦନ କରିବେ ରେ ଶୟନ, କୋଥାଏ ରବେ ତୋର ବନ୍ଧୁ ବାନ୍ଧବଗଣ, ଯେ ଦନେ ନୟନେ, କର ହରିନାମ ସାର, ତେ ମାସ୍ତେ ଲବେ ନା ଗ୍ରେବେ ନା ଶମନେ ॥

---

# ହିନ୍ଦି ଭଜନ

( ୧୧୦ )

ଚାଲ ଛପକା—ଭଯାଲ ।

ଛୁଟି ଗୃଚ କୀ ସମଜଭାରେ । ଆଖର ମଟ୍ଟିମେ ମିଲ୍‌ଯାଏଗା । ପଦ । ତନ୍‌ବ ଯାଅଗା, ମନବ ଯାଆଗା, ଯାଆଗା, ମଲ୍ ମଲ୍ ଖାପା । ଲ୍ପର୍ସ୍ୟୋ ସ୍ୱେପେସ୍ୱାନା ସିନ୍‌ଗି ଯଦ୍‌ଗ ଜଙ୍ଗଲ ହୋଗା ବାସା । ୧ । କଣ୍ଟୁ ଘର କ ବଯ୍ୟେଲ୍ ହୋଗା ଆଁଖେ ପଟ୍ଟି ବାନ୍ଧେଗା । ଖାନେ ପିନେ କୁଛୁ ନେହିଁ ଦେଗା ସାସ୍ତ୍ରନ୍ ସୁବଓ୍ୟେଗା । ୨ । ଧୋବ ଘରକି ଗଧ ହୋଗା ମଯ୍ଯାଲ୍ଲ କପଡ଼ା ଡୋନ୍ଦେଗା । ଯାନେଆନେ କୁଲୁମ୍ କରେନା ଦୋସ୍ୱଲ୍ ପେଠା ଖଓ୍ୟେଗା । ୩ । ବାଜ ଧରନେ ବନ୍ଦରହୋଗା ଗଲ୍ଲେ ରସି ବାନ୍ଧେଗା । ଦ୍ୱାର ଦ୍ୱାରମେ କୌଡ଼ିକେ ଓ୍ୟାସ୍ତେ ଲକଡ଼ି ପର ଲସ୍କଓ୍ୟେଗ । ୪ । ଓରନନମ୍ନେମ କଓ୍ୟା ହୋଗା, କାନା ବୋଲକେ ଗଓ୍ୟେଗା । କେହେତେ କବିର ଶୁନ ଭଇ ସାଧୁ ଚଉରାଶି ଘୁମ-ଓ୍ୟେଗା । ୫ ।

———

( ୧୧୦ )

ଜଯ୍ୟେ ଗୋବନ୍ଦେ ପରମାନନ୍ଦେ ଭଜ ଗୋବନ୍ଦେ ରାମା । ନାଗର ନନ୍ଦକିଶୋର ମନୋହର ମୋହନ ମୂରତିଶ୍ୟାମା । ଘୋଷା । ଶ୍ୟାମକୁ ଶ୍ୟାମଲ ଶ୍ୟାମକୁ ଶୋହେ ଶ୍ୟାମଲ ମେଘେ ରାମା । ପୀତାମ୍ବର ବୈଜୟନ୍ତୀ ମାଲ ଭକ୍ତ ପୂରନ୍ କାମା ॥ ଏଡ଼ଭଡ଼ନେ ନୟନୀ ବାନେତେ ନୟନ ନୋଧନ ଶରନ ଅୟନା । ମୁରଲୀ କେସନ ଘନ ଘନ ବଜେ ନାଚେତ ଗ୍ୱାଲ ସୁଦାମା ॥ ଏତ ଗୋପିଲ ଯୋ ମଥୁରା ନଗରୀ ବଚେ ବଦରେ ନନ୍ଦ ଯାହିଁ । କହେତ କବୀର ଶୁନ ଭଇ ସାଧୁ କୃଷ୍ଣ ଚରନ-ଭଜନା ॥

———

(୧୧୨)

ଠାକୁର୍ ଭଲେ ବସିଛୋ ଜି । ଓଡ଼ିଶା ଜଗନ୍ନାଥ ପୁରୀମେ ।
ଭଲେ ବସିଛୋ ଜି, ବଳଭଦ୍ର ଜିକେ, ଭେଇୟା । । ଘୋଷା ।
ସତ୍ୟେ ତ୍ରେତ୍ତା ମଥୁରା ନଗରୀ ସତ୍ୟେ ତ୍ରେତ୍ତା କାଶୀ ।
ଝାଡ଼ଖଣ୍ଡମେ ଅସ୍ଥ ବସିଛେ ବୃନ୍ଦାବନକେ ବାସୀ । ୧ ।
ସତ୍ୟୁଗ ତ୍ରେତ୍ତା ମଥୁରା ନଗରୀ ଦ୍ୱାପର ତ୍ରେତ୍ତା କାଶୀ ।
କଲି ଯୁଗମେ ଅସ୍ଥ ବସିଛେ ବୃନ୍ଦାବନକେ ବାସୀ । ୨ ।
ଓଡ଼ିଆ ମାନଙ୍କ ଖିରୀଖିଚଡ଼ି ବଙ୍ଗାଲି ମାଙ୍ଗେ ଭାତ୍ ।
ସାଧୁ ମାଙ୍ଗେ ଦରଶନ ଆଉର ମହାପରସାଦ । ୩ ।
ଦାଲ ରୋଟି ଭାଜ ସାଧୁ ପରସେର କି ତରକାରୀ ।
ମୀନ ମାଛକେ ଭୋଗ ଲଗାବେ ଅଧମ ଜାତି ବଙ୍ଗାଲି । ୪ ।
ଗାଓଁ ଗାଓଁମେ ବାଗ ବଗିଚା ଚଲି ଚଲି ଫୁଲବାଗ ।
ଘର ଘର ଦେଖୋ ବେଲ ନଇଯୁଲ ଘର ଘର ଠାକୁର ବାଗ । ୫ ।
ଦୋ ଦୋ କୋଶ ପରେ ଡାକ ଲଗାଇ ପଞ୍ଚ କୋଶପର ଛଟୀ ।
ଚଲତେ ଚଲତେ ଫଉ ଫିରାନେ ଶହର ବଡ଼ା ଚମ୍ପୈ ମଠି । ୬ ।
ଚଛୀ ଚଛୀ ଚନର୍ମା ଲୁଟେ ଔର ଲୁଟେ ଫରଙ୍ଗି ।
ସିଂ [illegible] ପ୍ରେନାଦେ [illegible] ଣ୍ଡା ଲୁଟେ ଯାଦୀ ଉସ୍ତେ ଭିଦୋସୀ । ୭ ।
ଧନ [illegible] ଶାଢ଼ୀ ପହ୍ନରେ ଉପରେ ଟୋପେ ଜିନାସି ।
ଶାଶୁ ଶ୍ୱଶୁରଙ୍କ ଲାଜ ନ ରଖେ ଏଧିଠାଙ୍ଗ [illegible] ୮ ।
ନୀଳଚକ୍ର ପର ଧ୍ୱଜା ବସିଛେ ମସ୍ତକେ ଶେଷ ହୀରା ।
ଠାକୁର ଆଗେ ଦାସ ନାଚେ ଗାବେ ଦାସ କବୀର । ୯ ।

---

(୧୧୩)

କାସ୍ୱା ଗଡବାଧନ । ମତଲର ଗରବ ଗୁମାନ କାସ୍ୱା ନାଚେ ଆପନ । ପଦ । ଚୁନ୍ ଚୁନ୍ କଙ୍କର ମହଲେ ବଣାୟୋ ବନ

କହେ ଘର ମେରା । ଫୌଜଆଇ ଗୋପାଲ ଲାଲକ ନ ଘର ତେରା ନ ମେରା ॥ ମାତ କହେ ଏ ପୁତ୍ର ହମାର ଭଗ୍ନୀ କହେ ଭଗ୍ନା ମେରା । ଘାଇ କହେ ଏ ଭଗ୍ନା ହମାର ନାରୀ କହେ ପତି ମେରା ॥ ସ୍ୱରଜନ ମିଲ ମତା ନ୍ତ୍ରପାସ୍ତ୍ରେ ଗଡ୍ୟା କାଠକ କାଢ଼ୀ । ଧାର ଜଙ୍ଗଲମେ ଡେରାକନା ଉନ୍ହାଁ ଫୁଙ୍କଦେଇ ଯୋଡ଼ି । ହାଡଜଲେ ଜେସା ଲକଡ଼ିରେ କେଶଜଲେ ଯୈସି ଘାସ । କାଞ୍ଚନମାସ୍ୱ ଏଇଁ ଜଲେର କୋଇ ନ ଆବେ ପାଶ ॥ କହେତ କବୀର ଶୁନ ଭାଇ ସାଧୁ ଏ ପଦ ହୁଏ ନିରବାନ । ଏ ପଦକୁ ଯୋ ନଜାଣର ସୋ ଯାବେ ନରକ ନିଶାନ । ୫ ।

---

( ୧୧୪ )

( ଲେଲ ଲେଲ ଶିବ ଶଙ୍କର—ବୃନ୍ଦେ )

ଶ୍ରୀ ଜାଗିସ୍ତେ ରଘୁନାଥ କୁମର ପଞ୍ଛୀ ବନ ବୋଲେ । ଟେକ ଶଶୀକିରଣ ଶୀତଲ ଭେଇ ସବ ଇ ପ୍ରିୟା ମିଲନ ଗଇ, ତ୍ରିବିଧ ମନ୍ଦ ଚଲନ୍ତ ପବନ ଛିକିବ ଦୁମ ଡୋଲେ । ୧ । ପ୍ରଭାତ ଭାନ ପ୍ରକଟ ଭସ୍ତ ରଜନୀକୋ ତିମର ଗସ୍ତୋ । ଭ୍ରମ୍ପ କରନ୍ତ ଗୁଞ୍ଜଗାନ କମଲଦଲ ବୋଲେ । ୨ । ମୁଖ କେ ଅନ୍ଧକ ପୂର କର ନୟନ ପଲକ ଖୋଲେ । ତୁଳସୀଦାସ ଅତି ଅନନ୍ଦେ, ନିରେଖି କେ ମୁଖାରବିନ୍ଦ, ଧାନକୋ ଦେତ ଦାନ ଭୂଷଣ ଅନ୍ମୋଲେ । ୪ ।



ସମାପ୍ତ

---

ମୁଦ୍ରାକର—ଶ୍ରୀ ଅଭେଷିତ ଦାସ, ଦାଶରଥି ପ୍ରେସ, କଟକ—୧୯୬୨

# ଉପେନ୍ଦ୍ର ଭଞ୍ଜଙ୍କ ରଚିତ

## ଅନ୍ୟାନ୍ୟ ପୁସ୍ତକାବଳୀ

| | | | |
|---|---|---|---|
| ରସଲେଖା | ଟ୧-୫୦ | କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ | ଟ୬-୦୦ |
| ଛାନ୍ଦଭୂଷଣ | ଟ୧-୦୦ | ଚିତ୍ରକାବ୍ୟ ବନ୍ଧୋଦୟ | ଟ୨-୫୦ |
| କଳା କଉତୁକ | ଟ ୭୫ | ଚଉପଦୀ ଭୂଷଣ | ଟ୦-୨୫ |
| ସୁଭଦ୍ରାପରିଣୟ | ଟ୧-୨୫ | ଚଉପଦୀ ଚନ୍ଦ୍ର | ଟ୦-୧୨ |
| ବୈଦେହୀଶ ବିଳାସ | | ହେମକରଜ ଚଉତିଶା ଓ | |
| ୧ ସେଟ | ଟ୧୦-୦୦ | ଚଉପଦବ | ଟ୦-୧୨ |
| ଅବନା ରସତରଙ୍ଗ | ଟ୧-୨୫ | ସୁବର୍ଣ୍ଣରେଖା ଓ | |
| ପ୍ରେମସୁଧାନିଧି | ଟ୧-୦୦ | ଦଶପୋଇ | ଟ୧-୨୫ |
| ରସିକହାରାବଳୀ | ଟ୧-୨୫ | ବଜାର ବୋଲି | ଟ୦-୨୫ |
| ରସ ପଞ୍ଚକ | ଟ୧-୨୫ | ରସ ପୋଇ | ଟ୦ ୧୨ |
| ଲାବଣ୍ୟବତୀ (ବନ୍ଧାଇ) | ଟ୭-୦୦ | ଲାବଣ୍ୟନିଧି | ଟ୦-୧୯ |
| ଗୀତାଭିଧାନ | ଟ୦-୩୭ | ଶୋଭାବତୀ କାବ୍ୟ | ଟ୦-୩୦ |



ପ୍ରାପ୍ତିସ୍ଥାନ:—

**ଦାଶରଥି ପୁସ୍ତକାଳୟ**

ବାଲୁବଜାର, କଟକ-୨